ଦାଦା ଭଗବାନ ପ୍ରରୂପିତ

# ମୁଁ କିଏ ?

ନିଜେ 'ନିଜ'ଠାରୁ କେବେ ପର୍ଯ୍ୟନ୍ତ ଅଜଣା ରହିବ ?
'ତୁମେ ନିଜେ କିଏ'
ତାହା ଜାଣିବାର ଆବଶ୍ୟକତା ଅଛି ।

Oriya

ପ୍ରକାଶକ : ଶ୍ରୀ ଅଜିତ୍ ସି. ପଟେଲ
ଦାଦା ଭଗବାନ ଆରାଧନା ଟ୍ରଷ୍ଟ
୫, ମମତା ପାର୍କ ସୋସାଇଟୀ, ନବଗୁଜରାଟ
କଲେଜ ପଛ, ଉସ୍ମାନପୁରା,
ଅହମଦାବାଦ୍-୩୮୦୦୧୪, ଗୁଜରାଟ
ଫୋନ୍ : (୦୭୯) ୩୯୮୩୦୧୦୦



ପ୍ରଥମ ସଂସ୍କରଣ : ବହି ସଂଖ୍ୟା ୧୦୦୦ ମଇ ୨୦୧୬
ଦ୍ୱିତୀୟ ସଂସ୍କରଣ : ବହି ସଂଖ୍ୟା ୨୦୦୦ ନଭେମ୍ବର ୨୦୧୭

ଭାବ ମୂଲ୍ୟ : 'ପରମ ବିନୟ' ଏବଂ
'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

ଦ୍ରବ୍ୟ ମୂଲ୍ୟ : ୧୦ ଟଙ୍କା

ମୁଦ୍ରକ : ଅମ୍ବା ଅଫ୍‌ସେଟ୍ ,
B-99, ଇଲେକ୍ଟ୍ରୋନିକ୍ସ G.I.D.C, K-6 ରୋଡ଼,
ସେକ୍ଟର-୨୫, ଗାନ୍ଧୀନଗର - ୩୮୨୦୪୪
ଫୋନ୍ : (୦୭୯) ୩୯୮୩୦୩୪୧/୪୨

# ତ୍ରିମନ୍ତ୍ର






ନମୋ ଅରିହଂତାଣଂ

ନମୋ ସିଦ୍ଧାଣଂ

ନମୋ ଆୟରିୟାଣଂ

ନମୋ ଉବଜ୍ଝାୟାଣଂ

ନମୋ ଲୋଏ ସବ୍ବସାହୁଣଂ

ଏସୋ ପଞ୍ଚ ନମୁକ୍କାରୋ,

ସବ୍ବ ପାବପ୍ପଣାସଣୋ

ମଙ୍ଗଲାଣଂ ଚ ସବ୍ବେସିଂ,

ପଢମଂ ହବଇ ମଙ୍ଗଲମ୍ ।।୧।।

ଓଁ ନମୋ ଭଗବତେ ବାସୁଦେବାୟ ।।୨।।

ଓଁ ନମଃ ଶିବାୟ ।। ୩ ।।

।। ଜୟ ସଚ୍ଚିଦାନନ୍ଦ ।।





# ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବାକୁ ଯାଉଛି । ପଛରେ ଅନୁଗାମୀ ଦରକାର କି ନାହିଁ ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ-ଗାଁ, ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନ କାଳ ମଧ୍ୟରେ ହିଁ ପୂଜ୍ୟ ଡା. ନୀରୂବେନ ଅମୀନ(ନୀରୂମା)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୂମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବାର ସିଦ୍ଧି ପ୍ରଦାନ କରିଥିଲେ । ନୀରୂମାଙ୍କ ଉପସ୍ଥିତିରେ, ତାଙ୍କର ଆଶୀର୍ବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୂମାଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁ ରହିଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ପୁସ୍ତକରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ରୂପରେ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, ମାତ୍ର ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲା ଅଛି । ଯେପରି ପ୍ରଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତି କରି ହିଁ ସ୍ୱୟଂର ଆତ୍ମା ଜାଗୃତ ହୋଇପାରେ ।

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଳ୍‌ଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି, ତାଙ୍କ ଶ୍ରୀମୂଖରୁ ଆତ୍ମତତ୍ତ୍ୱ ସମନ୍ଧୀୟ ଯେଉଁ ବାଣୀ ବାହାରିଛି, ତାହାକୁ ରେକର୍ଡ କରି, ସଙ୍କଳନ ତଥା ସମ୍ପାଦନ କରି ଗ୍ରନ୍ଥରେ ପ୍ରକାଶିତ କରାଯାଇଛି । 'ମୁଁ କିଏ ?' ପୁସ୍ତକରେ ଆତ୍ମା, ଆତ୍ମଜ୍ଞାନ ତଥା ଜଗତକର୍ତ୍ତା ବିଷୟରେ ଅନେକ ମୌଳିକ କଥା ସଂକ୍ଷିପ୍ତରେ ସଙ୍କଳିତ କରାଯାଇଛି । ସୁଜ୍ଞ ପାଠକଙ୍କ ପଢ଼ିବା ମାତ୍ରେ ଆତ୍ମସାକ୍ଷାତ୍କାର ର ଭୂମିକା ନିଶ୍ଚିତ ରୂପେ ପ୍ରସ୍ତୁତ ହୋଇଯାଏ, ଏହା ଅନେକ ଲୋକଙ୍କର ଅନୁଭବ ଅଟେ ।

'ଅମ୍ବାଲାଲଭାଇ'ଙ୍କୁ ସମସ୍ତେ 'ଦାଦାଜୀ' କହୁଥିଲେ । 'ଦାଦାଜୀ' ଅର୍ଥାତ ପିତାମହ ଆଉ 'ଦାଦା ଭଗବାନ' ତ ସେ ଭିତରବାଲା ପରମାତ୍ମାଙ୍କୁ କହୁଥିଲେ । ଶରୀର ଭଗବାନ ହୋଇପାରିବ ନାହିଁ, ତାହା ତ ବିନାଶୀ ଅଟେ । ଭଗବାନ ତ ଅବିନାଶୀ ଅଟନ୍ତି ଏବଂ ତାଙ୍କୁ ସେ 'ଦାଦା ଭଗବାନ' କହୁଥିଲେ, ଯିଏ ପ୍ରତ୍ୟେକ ଜୀବ ଭିତରେ ଅଛନ୍ତି ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ, ପାଠକଙ୍କୁ ଦାଦାଶ୍ରୀଙ୍କର ହିଁ ବାଣୀ ଶୁଣାଯାଉଛି, ଏପରି ଅନୁଭବ ହେଉ । ତାଙ୍କ ହିନ୍ଦୀ ବିଷୟରେ ତାଙ୍କରି ଭାଷାରେ ଯଦି କହିବା ତେବେ "ମୋ ହିନ୍ଦୀ ଅର୍ଥାତ ଗୁଜରାଟୀ, ହିନ୍ଦୀ ଏବଂ ଇଂରାଜୀର ମିକ୍ସଚର ଅଟେ, କିନ୍ତୁ ଯେତେବେଳେ 'ଟି'(ଚାହା) ତିଆରି ହେବ, ସେତେବେଳେ ଭଲ ଲାଗିବ । "

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି କିନ୍ତୁ ଦାଦାଶ୍ରୀଙ୍କ ଆତ୍ମଜ୍ଞାନର ପ୍ରକୃତ ଆଶୟ, ଯେମିତି କୁ ସେମିତି, ଆପଣଙ୍କୁ ଗୁଜରାଟୀ ଭାଷାରେ ହିଁ ଅବଗତ ହେବ । ଯେଉଁମାନଙ୍କୁ ଜ୍ଞାନର ଗଭୀରତାକୁ ଯିବାର ଅଛି, ଜ୍ଞାନର ପ୍ରକୃତ ମର୍ମ ବୁଝିବାର ଅଛି, ସେମାନେ ଏଥିପାଇଁ ଗୁଜରାଟୀ ଭାଷା ଶିଖନ୍ତୁ, ଏହା ଆମର ନମ୍ର ବିନତୀ ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।

# ସମ୍ପାଦକୀୟ

ଜୀବନରେ ଯାହା କିଛି ବି ସାମ୍ନାରେ ଆସିଛି, ତାହାର ପୂର୍ଣ୍ଣ ରୂପରେ ରିୟଲାଇଜେସନ୍(ଅନୁଭବ) ନ କରି ମନୁଷ୍ୟ ତାହାକୁ ଆପଣାଏ ନାହିଁ । ସବୁ ରିୟଲାଇଜେସନ୍ କଲା, ମାତ୍ର 'ସେଲ୍ଫ'(ନିଜ)ର ହିଁ ରିୟଲାଇଜେସନ୍ କଲା ନାହିଁ । ଅନନ୍ତ ଜନ୍ମରୁ 'ମୁଁ କିଏ' ତାହାର ପରିଚୟ ହିଁ ଅଟକି ରହିଛି, ଏଥିପାଇଁ ତ' ଏହି ଭଟକିବାର ଅନ୍ତ ହେଉ ନାହିଁ! ତାହାର ପରିଚୟ କିପରି ହେବ ?

ଯାହାକୁ ନିଜର ପରିଚୟ ହୋଇସାରିଛି, ସେହି ବ୍ୟକ୍ତି ଅନ୍ୟମାନଙ୍କୁ ସହଜରେ ପରିଚୟ କରାଇପାରିବ । ଏପରି ବିଭୂତି ଅର୍ଥାତ୍ ସ୍ୱୟଂ 'ଜ୍ଞାନୀ' ହିଁ! ଜ୍ଞାନୀପୁରୁଷ, ଅର୍ଥାତ୍ ଯାହାଙ୍କୁ ଏହି ସଂସାରରେ କିଛି ବି ଜାଣିବାକୁ, ଅବା କିଛି ବି କରିବାକୁ ବାକି ରହି ନଥିବ, ସେ! ଏପରି ଜ୍ଞାନୀପୁରୁଷ ପରମ ପୂଜ୍ୟ ଦାଦାଶ୍ରୀ, ଏହି କାଳରେ ଆମ ମଧ୍ୟକୁ ଆସି, ଆମରି ଭାଷାରେ, ଆମେ ବୁଝି ପାରିବା ଭଳି ସରଳ ଭାଷାରେ, ପ୍ରତ୍ୟେକଙ୍କର ମୂଳ ପ୍ରଶ୍ନ 'ମୁଁ କିଏ' ର ସମାଧାନ ସହଜ ରୂପରେ ବତାଇ ଦିଅନ୍ତି ।

କେବଳ ଏତିକି ନୁହେଁ, ଏହି ସଂସାର କ'ଣ ? କିପରି ଚାଲୁଅଛି ? କର୍ତ୍ତା କିଏ ? ଭଗବାନ କ'ଣ ? ମୋକ୍ଷ କ'ଣ ? ଜ୍ଞାନୀପୁରୁଷ କାହାକୁ କୁହନ୍ତି ? ସୀମନ୍ଧର ସ୍ୱାମୀ କିଏ ? ସନ୍ଥ, ଗୁରୁ ଏବଂ ଜ୍ଞାନୀପୁରୁଷ ମଧ୍ୟରେ ଅନ୍ତର କ'ଣ ? ଜ୍ଞାନୀଙ୍କୁ ଚିହ୍ନିବା କିପରି ? ଜ୍ଞାନୀ କ'ଣ କରିପାରନ୍ତି ? ସେଥିରେ ବି, ପରମ ପୂଜ୍ୟ ଦାଦାଶ୍ରୀଙ୍କର ଅକ୍ରମ ମାର୍ଗ କ'ଣ ? କ୍ରମିକ ରୂପରେ ତ' ମୋକ୍ଷ ମାର୍ଗରେ ଅନନ୍ତ ଜନ୍ମରୁ ଚଢ଼ି ଆସୁଛେ, କିନ୍ତୁ 'ଲିଫ୍ଟ'(ଏଲିଭେଟର୍) ମଧ୍ୟ ମୋକ୍ଷ ମାର୍ଗରେ ହୋଇ ପାରିବ ? ଅକ୍ରମ ମାର୍ଗ ଦ୍ୱାରା, ଏହି ଯୁଗରେ, ସଂସାରରେ ରହି ମଧ୍ୟ ମୋକ୍ଷ ଅଛି ଏବଂ ମୋକ୍ଷ କିପରି ପ୍ରାପ୍ତ କରି ହେବ ଏହାର ସମ୍ପୂର୍ଣ୍ଣ ସମଝ(ବୋଧ) ଏବଂ ସଠିକ୍ ଦିଗର ପ୍ରାପ୍ତି ପରମ ପୂଜ୍ୟ ଦାଦାଶ୍ରୀ କରାଇଛନ୍ତି ।

'ମୁଁ କିଏ'ର ପରିଚୟ ପରେ କିପରି ଅନୁଭୂତି ରହେ, ସଂସାର ବ୍ୟବହାର ପୂରା କରିବା ସହ ମଧ୍ୟ ସଂପୂର୍ଣ୍ଣ ନିର୍ଲେପ ଆତ୍ମସ୍ଥିତିର ଅନୁଭୂତିରେ ରହିହେବ । ଆଧି, ବ୍ୟାଧି ଏବଂ *ଉପାଧି*ରେ ମଧ୍ୟ ନିରନ୍ତର ସ୍ୱସମାଧିରେ ରହି ପାରିବା, ଏହା ଅକ୍ରମ ବିଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମହାତ୍ମାଙ୍କର ଅନୁଭବ ଅଟେ! ଏହି ସବୁର ପ୍ରାପ୍ତି ପାଇଁ ପ୍ରସ୍ତୁତ ସଙ୍କଳନ ମୋକ୍ଷାର୍ଥୀମାନଙ୍କ ପାଇଁ ମୋକ୍ଷ ମାର୍ଗରେ ପ୍ରକାଶ ସ୍ତମ୍ଭ ହୋଇ ଦିଗ ଦର୍ଶନ କରୁ, ଏହି ଅଭ୍ୟର୍ଥନା ।

**ଡା. ନୀରୂବେନ ଅମୀନଙ୍କ ଜୟ ସଚ୍ଚିଦାନନ୍ଦ**

# ମୁଁ କିଏ ?

## (୧) ମୁଁ କିଏ ?

### ଭିନ୍ନ, ନାମ ଏବଂ 'ନିଜେ'

**ଦାଦାଶ୍ରୀ :** ଆପଣଙ୍କ ନାଁ କ'ଣ ?

**ପ୍ରଶ୍ନକର୍ତ୍ତା :** ମୋ ନାଁ ଚନ୍ଦୁଲାଲ ।

**ଦାଦାଶ୍ରୀ :** ସତରେ ତୁମେ ଚନ୍ଦୁଲାଲ ?

**ପ୍ରଶ୍ନକର୍ତ୍ତା :** ହଁ ଆଜ୍ଞା ।

**ଦାଦାଶ୍ରୀ :** ଚନ୍ଦୁଲାଲ ତ' ତୁମ ନାଁ ଅଟେ । ଚନ୍ଦୁଲାଲ ତୁମର ନାଁ ନୁହେଁ କି ? ତୁମେ 'ନିଜେ' ଚନ୍ଦୁଲାଲ ଅଟ ନା ତୁମ ନାଁ ଚନ୍ଦୁଲାଲ ଅଟେ ?

**ପ୍ରଶ୍ନକର୍ତ୍ତା :** ତାହା ତ' ନାଁ ଅଟେ ।

**ଦାଦାଶ୍ରୀ :** ହଁ, ତେବେ ପୁଣି 'ତୁମେ' କିଏ ? ଯଦି 'ଚନ୍ଦୁଲାଲ' ତୁମ ନାଁ ଅଟେ ତେବେ 'ତୁମେ' କିଏ ? ତୁମ 'ନାଁ' ଏବଂ 'ତୁମେ' କ'ଣ ଅଲଗା ନୁହଁ ? 'ତୁମେ' ନାଁ ଠାରୁ ଯଦି ଅଲଗା ତେବେ 'ତୁମେ'(ନିଜେ) କିଏ ? ମୁଁ କ'ଣ କହିବାକୁ ଚାହୁଁଛି, ତୁମେ ବୁଝି ପାରୁଛ ? 'ଏହା ମୋ ଚଷମା' ଏପରି କହିଲେ ଚଷମା ଏବଂ ଆମେ ଅଲଗା ହେଲେ ନା ? ସେହିପରି ତୁମେ(ନିଜେ) ନାଁ ଠାରୁ ଅଲଗା ଅଟ, ଏପରି ଏବେ ଲାଗୁନାହିଁ ?

ଉଦାହରଣ ସ୍ୱରୂପ ଦୋକାନର ନାଁ ରଖିବା 'ଜେନେରାଲ୍ ଟ୍ରେଡର୍ସ', ତେବେ ତାହା କୌଣସି ଦୋଷ ନୁହେଁ । କିନ୍ତୁ ଆମେ ଯଦି ତାହାର ମାଲିକକୁ କହିବା ଯେ 'ହେ ! ଜେନେରାଲ୍ ଟ୍ରେଡର୍ସ, ଏଠାକୁ ଆସ ।' ତେବେ ମାଲିକ କ'ଣ କହିବେ ଯେ 'ମୋ ନାଁ ତ ଜୟନ୍ତୀଲାଲ ଏବଂ ଜେନେରାଲ ଟ୍ରେଡର୍ସ ତ ମୋ ଦୋକାନର ନାଁ ।' ଅର୍ଥାତ୍ ଦୋକାନର ନାଁ ଅଲଗା ଏବଂ ମାଲିକ ତା' ଠାରୁ ଅଲଗା, ମାଲ୍ ଅଲଗା, ସବୁ ଅଲଗା ଅଲଗା ଅଟେ ନା ? ତୁମକୁ କ'ଣ ଲାଗୁଛି ?

**ପ୍ରଶ୍ନକର୍ତ୍ତା :** ଠିକ କଥା ।

**ଦାଦାଶ୍ରୀ :** କିନ୍ତୁ ଏଠି ତ, 'ନା, ମୁଁ ହିଁ ଚନ୍ଦୁଲାଲ' ଏପରି କହିବେ । ଅର୍ଥାତ୍ ଦୋକାନର ବୋର୍ଡ଼ ବି ମୁଁ, ଏବଂ ମାଲିକ ବି ମୁଁ ! ତୁମେ ଚନ୍ଦୁଲାଲ ଅଟ, ତାହା ତ ତୁମକୁ ଚିହ୍ନିବାର ସାଧନ ଅଟେ ।

## ପ୍ରଭାବ ପଡ଼ିଲା, ତେବେ ଆତ୍ମସ୍ୱରୂପ ନୁହେଁ

ତୁମେ ଚନ୍ଦୁଲାଲ ବିଲ୍‌କୁଲ୍ ନୁହଁ, ଏପରି ମଧ୍ୟ ନୁହେଁ । ତୁମେ ଚନ୍ଦୁଲାଲ ଅଟ, ମାତ୍ର 'ବାୟ ରିଲେଟିଭ୍ ଭ୍ୟୁ ପଏଣ୍ଟ'(ବ୍ୟବହାରିକ ଦୃଷ୍ଟି)ରୁ ୟୁ ଆର୍ ଚନ୍ଦୁଲାଲ, ଇଜ୍ କରେକ୍ଟ ।

**ପ୍ରଶ୍ନକର୍ତ୍ତା :** ମୁଁ ତ ଆତ୍ମା ଅଟେ, କିନ୍ତୁ ନାଁ ଟି ଚନ୍ଦୁଲାଲ ।

**ଦାଦାଶ୍ରୀ :** ହଁ, କିନ୍ତୁ ଏବେ ଯଦି କିଏ 'ଚନ୍ଦୁଲାଲ'କୁ ଗାଳି ଦେବ ତେବେ ତୁମ ଉପରେ ପ୍ରଭାବ ପଡ଼ିବ କି ନାହିଁ ?

**ପ୍ରଶ୍ନକର୍ତ୍ତା** : ପ୍ରଭାବ ତ ପଡ଼ିବ ।

**ଦାଦାଶ୍ରୀ** : ତେବେ 'ତୁମେ' 'ଚନ୍ଦୁଲାଲ' ଅଟ, 'ଆତ୍ମା' ନୁହେଁ । ଯଦି ଆତ୍ମା ହୋଇଥାନ୍ତ ତେବେ ତୁମ ଉପରେ ପ୍ରଭାବ ପଡ଼ିନଥାନ୍ତା, ଆଉ ପ୍ରଭାବ ପଡୁଛି, ଏଣୁ ତୁମେ ଚନ୍ଦୁଲାଲ ହିଁ ଅଟ ।

ଚନ୍ଦୁଲାଲ ନାଁ ରେ ଯଦି କେହି ଗାଳି ଦିଏ ତେବେ ତୁମେ ତାହାକୁ ଧରି ନେଉଛ । ଚନ୍ଦୁଲାଲର ନାଁ ନେଇ ଯଦି କେହି ଓଲଟା-ସିଧା କୁହେ ତେବେ ତୁମେ କାନ୍ଥରେ କାନ ଲଗେଇ ଶୁଣୁଛ । ମୁଁ କୁହେ ଯେ 'ଭାଇ, କାନ୍ଥ ତୁମକୁ କ'ଣ କହୁଛି ?' ତେବେ କୁହନ୍ତି 'ନା, କାନ୍ଥ ନୁହେଁ, ଭିତରେ ମୋ କଥା ଚାଲିଛି ତାହା ମୁଁ ଶୁଣୁଛି ।' କାହା କଥା ଚାଲିଛି ? ତେବେ କହିବେ 'ଚନ୍ଦୁଲାଲର ।' ଆରେ, କିନ୍ତୁ ତୁମେ ଚନ୍ଦୁଲାଲ ନୁହଁ । ଯଦି ତୁମେ ଆତ୍ମା ଅଟ ତେବେ ଚନ୍ଦୁଲାଲର କଥା ନିଜ ଉପରକୁ ନିଅନ୍ତ ନାହିଁ ।

**ପ୍ରଶ୍ନକର୍ତ୍ତା :** ବାସ୍ତବରେ ତ 'ମୁଁ ଆତ୍ମା ହିଁ ଅଟେ' ନା ?

**ଦାଦାଶ୍ରୀ :** ଏବେ ତୁମେ ଆତ୍ମା ହୋଇ ନାହଁ ନା ! ଚନ୍ଦୁଲାଲ ହିଁ ଅଟ ! 'ମୁଁ ଚନ୍ଦୁଲାଲ' ଏହା ଆରୋପିତ ଭାବ ଅଟେ । ତୁମକୁ 'ମୁଁ ଚନ୍ଦୁଲାଲ ହିଁ ଅଟେ' ଏହି

ବିଲିଫ୍(ମାନ୍ୟତା) ଘର କରିଗଲାଣି, ଏହା ରଙ୍ଗ୍ ବିଲିଫ୍ ଅଟେ ।

## (୨) ବିଲିଫ୍, ରଙ୍ଗ୍-ରାଇଟ୍

### କେତେ ସାରା ରଙ୍ଗ୍ ବିଲିଫ୍(ଭ୍ରାନ୍ତ ମାନ୍ୟତା)

'ମୁଁ ଚନ୍ଦୁଲାଲ ଅଟେ' ଏହି ମାନ୍ୟତା, ଏହି ବିଲିଫ୍ ତ' ତୁମକୁ, ରାତିରେ ନିଦରେ ମଧ୍ୟ ଯାଉ ନାହିଁ ନା ! ପୁଣି ଲୋକେ ଆମର ବାହାଘର କରାଇ ଆମକୁ କହିବେ ଯେ, 'ତୁ ତ ଏହି ସ୍ତ୍ରୀର ସ୍ୱାମୀ ଅଟୁ ।' ଏଥିପାଇଁ ଆମେ ପୁଣି ସ୍ୱାମିତ୍ୱ ମାନିନେଲେ । ପୁଣି 'ମୁଁ ୟା'ର ସ୍ୱାମୀ ଅଟେ, ସ୍ୱାମୀ ଅଟେ' କରି ଚାଲିଲେ । କେହି କ'ଣ ସବୁଦିନ ପାଇଁ ସ୍ୱାମୀ ହୋଇ ରୁହେ କି ? ଡିଭୋର୍ସ(ଛାଡ଼ପତ୍ର) ହେବା ପରଦିନ ତା'ର ସ୍ୱାମୀ ହୋଇ ରହିବ କି ? ଅର୍ଥାତ୍ ଏସବୁ ରଙ୍ଗ୍ ବିଲିଫ୍ ବସିଯାଇଛି ।

'ମୁଁ ଚନ୍ଦୁଲାଲ' ଏହା ରଙ୍ଗ୍ ବିଲିଫ୍ ଅଟେ । ପୁଣି 'ଏହି ସ୍ତ୍ରୀର ସ୍ୱାମୀ ଅଟେ' ଏହା ଦ୍ୱିତୀୟ ରଙ୍ଗ୍ ବିଲିଫ୍ । 'ମୁଁ ବୈଷ୍ଣବ ଅଟେ' ଏହା ତୃତୀୟ ରଙ୍ଗ୍ ବିଲିଫ୍ । 'ମୁଁ ଓକିଲ ଅଟେ' ଏହା ଚତୁର୍ଥ ରଙ୍ଗ୍ ବିଲିଫ୍ । 'ମୁଁ ଏହି ପିଲାର ବାପ ଅଟେ' ଏହା ପଞ୍ଚମ ରଙ୍ଗ୍ ବିଲିଫ୍ । 'ତା'ର ମାମୁଁ ଅଟେ' ଏହା ଷଷ୍ଠ ରଙ୍ଗ୍ ବିଲିଫ୍ । 'ମୁଁ ଗୋରା ଅଟେ' ଏହା ସପ୍ତମ ରଙ୍ଗ୍ ବିଲିଫ୍ । 'ମୁଁ ପଇଁଚାଳିଶୀ ବର୍ଷର ଅଟେ' ଏହା ଅଷ୍ଟମ ରଙ୍ଗ୍ ବିଲିଫ୍ । 'ମୁଁ ୟା'ର ପାର୍ଟନର ଅଟେ' ଏହା ମଧ୍ୟ ରଙ୍ଗ୍ ବିଲିଫ୍ । 'ମୁଁ ଇନ୍‌କମ୍‌ଟ୍ୟାକ୍ସ ପେୟର ଅଟେ' ଯଦି ଏପରି ତୁମେ କୁହ ତେବେ ତାହା ମଧ୍ୟ ରଙ୍ଗ୍ ବିଲିଫ୍ । ଏହିପରି କେତେ ରଙ୍ଗ୍ ବିଲିଫ୍ ବସିଯାଇଥିବ ?

### 'ମୁଁ' ର ସ୍ଥାନ ପରିବର୍ତ୍ତନ

'ମୁଁ ଚନ୍ଦୁଲାଲ' ଏହା ଅହଂକାର ଅଟେ । କାହିଁକିନା ଯେଉଁଠାରେ 'ମୁଁ' ନାହିଁ, ସେହିଠାରେ 'ମୁଁ'ର ଆରୋପଣ କଲ, ତାହାର ନାମ ଅହଂକାର ।

**ପ୍ରଶ୍ନକର୍ତ୍ତା :** ' ମୁଁ ଚନ୍ଦୁଲାଲ ଅଟେ' କହିଲେ, ସେଥିରେ ଅହଂକାର କେଉଁଠୁ ଆସିଲା ? 'ମୁଁ ଏମିତି, ମୁଁ ସେମିତି' ଏପରି କଲେ ତାହା ଅଲଗା କଥା, କିନ୍ତୁ ସହଜରୂପରେ କହିଲେ, ସେଥିରେ ଅହଂକାର କେଉଁଠୁ ଆସିଲା ?

**ଦାଦାଶ୍ରୀ :** ସହଜ ଭାବରେ କହିଲେ ମଧ୍ୟ କ'ଣ ଅହଂକାର ଚାଲିଯାଏ ?

'ମୋ ନାଁ ଚନ୍ଦୁଲାଲ' ଏପରି ସହଜ ରୂପରେ କହିବା ମଧ୍ୟ ଅହଂକାର ହିଁ ଅଟେ । କାରଣ ତୁମେ 'ଯାହା ଅଟ' ତାହା ଜାଣି ନାହଁ ଏବଂ 'ଯାହା ନୁହଁ' ତାହାର ଆରୋପଣ କରୁଛ, ଏହା ସବୁ ଅହଂକାର ହିଁ ଅଟେ ନା !

'ତୁମେ ଚନ୍ଦୁଲାଲ ଅଟ' ତାହା ଡ୍ରାମାଟିକ୍ ଅଟେ । ଅର୍ଥାତ୍ 'ମୁଁ ଚନ୍ଦୁଲାଲ' ଏପରି କହିବାରେ ଅସୁବିଧା ନାହିଁ କିନ୍ତୁ 'ମୁଁ ଚନ୍ଦୁଲାଲ' ଏହି ବିଲିଫ୍ ନ ହେବା ଉଚିତ୍ ।

**ପ୍ରଶ୍ନକର୍ତ୍ତା :** ହଁ, ନଚେତ୍ 'ମୁଁ' ପଦ ଆସିଗଲା ।

**ଦାଦାଶ୍ରୀ :** 'ମୁଁ' 'ମୁଁ' ସ୍ଥାନରେ ବସିଲେ ତାହା ଅହଂକାର ନୁହେଁ । କିନ୍ତୁ 'ମୁଁ' ମୂଳ ସ୍ଥାନରେ ନାହିଁ, ଆରୋପିତ ସ୍ଥାନରେ ଅଛି ସେଥିପାଇଁ ଅହଂକାର । ଆରୋପିତ ସ୍ଥାନରୁ 'ମୁଁ' ଉଠିଯାଇ ମୂଳ ସ୍ଥାନରେ ଯଦି ବସିଯାଏ, ତେବେ ଅହଂକାର ଚାଲିଯିବ । ଅର୍ଥାତ୍ 'ମୁଁ'କୁ ବାହାର କରିବାର ନାହିଁ, 'ମୁଁ'କୁ ତା'ର ଏକଜାକ୍ଟ ପ୍ଲେସ୍ (ଯଥାର୍ଥ ସ୍ଥାନ)ରେ ରଖିବାର ଅଛି ।

## 'ନିଜେ' ନିଜ ଠାରୁ ହିଁ ଅଜଣା ?

ଏହା ତ ଅନନ୍ତ ଜନ୍ମରୁ, ନିଜେ, 'ନିଜ'ଠାରୁ ଗୁପ୍ତ(ଅଜଣା) ରହିବାର ପ୍ରଚେଷ୍ଟା ଅଟେ । ନିଜେ, 'ନିଜ' ଠାରୁ ଗୁପ୍ତ ରୁହେ ଏବଂ ଅନ୍ୟର ସବୁକିଛି ଜାଣେ, ଏହା ଆଶ୍ଚର୍ଯ୍ୟ ହିଁ ଅଟେ ନା ! ନିଜେ, ନିଜ ଠାରୁ କେତେ ସମୟ ଗୁପ୍ତ ରହିବ ? କେବେ ପର୍ଯ୍ୟନ୍ତ ରହିବ ? 'ନିଜେ କିଏ' ଏହା ଜାଣିବା ପାଇଁ ହିଁ ଏହି ଜନ୍ମ । 'ନିଜେ କିଏ' ତାହା ଖୋଜିନେବା ପାଇଁ ହିଁ ମନୁଷ୍ୟ ଜନ୍ମ ହୋଇଛି । ନହେଲେ, ସେପର୍ଯ୍ୟନ୍ତ ଭଟକୁଥିବ । 'ମୁଁ କିଏ' ଏହା ଜାଣିବାକୁ ପଡ଼ିବ ନା ? ତୁମେ 'ନିଜେ କିଏ' ତାହା ଜାଣିବାକୁ ପଡ଼ିବ ନା ନାହିଁ ?

# (୩) 'I' ଏବଂ 'My'କୁ ଅଲଗା କରିବାର ପ୍ରୟୋଗ

## ସେପାରେଟ, 'I' ଏଣ୍ଡ 'My'(ଅଲଗା କର, 'ମୁଁ' ଏବଂ 'ମୋର' କୁ)

ତୁମକୁ ଯଦି କୁହାଯାଏ ଯେ, Separate 'I' and 'My' with Separator, ତେବେ ତୁମେ 'I' ଏଣ୍ଡ 'My' କୁ ସେପାରେଟ୍ କରିପାରିବ କି ?

'I' ଏଣ୍ଡ୍ 'My'କୁ ସେପାରେଟ୍ କରିବା ଦରକାର ନା ନାହିଁ ? ଜଗତରେ କେବେ ନା କେବେ ଜାଣିବାକୁ ତ ପଡ଼ିବ ନା ! ସେପାରେଟ୍ 'I' ଏଣ୍ଡ 'My' । ଯେପରି କ୍ଷୀର ପାଇଁ ସେପାରେଟର ଥାଏ, ସେଥିରୁ ଲହୁଣି ସେପାରେଟ୍ କରନ୍ତି ନା ? ସେହିପରି ଏହା ଅଲଗା କରିବାର ଅଛି ।

ତୁମ ପାଖରେ 'My' ଭଳି କିଛି ଜିନିଷ ଅଛି ? 'I' ଏକଲା ଅଛି ନା 'My' ସାଥିରେ ଅଛି ?

**ପ୍ରଶ୍ନକର୍ତ୍ତା :** 'My' ସାଥିରେ ରହିବ ନା !

**ଦାଦାଶ୍ରୀ :** କ'ଣ କ'ଣ 'My' ଅଛି ତୁମ ପାଖରେ ?

**ପ୍ରଶ୍ନକର୍ତ୍ତା :** ମୋ ଘର ଏବଂ ଘରର ସବୁ ଜିନିଷ ।

**ଦାଦାଶ୍ରୀ :** ସବୁ ତୁମର କୁହାଯିବ ? ଆଉ ୱାଇଫ୍(ସ୍ତ୍ରୀ) କାହାର କୁହାଯିବ ?

**ପ୍ରଶ୍ନକର୍ତ୍ତା :** ସେ ମଧ୍ୟ ମୋର ।

**ଦାଦାଶ୍ରୀ :** ଆଉ ପିଲାମାନେ କାହାର ?

**ପ୍ରଶ୍ନକର୍ତ୍ତା :** ସେମାନେ ମଧ୍ୟ ମୋର ।

**ଦାଦାଶ୍ରୀ :** ଆଉ ଏ ଘଣ୍ଟା କାହାର ?

**ପ୍ରଶ୍ନକର୍ତ୍ତା :** ଏହା ମଧ୍ୟ ମୋର ।

**ଦାଦାଶ୍ରୀ :** ଆଉ ଏହି ହାତ କାହାର ?

**ପ୍ରଶ୍ନକର୍ତ୍ତା :** ହାତ ମଧ୍ୟ ମୋର ।

**ଦାଦାଶ୍ରୀ :** ପୁଣି 'ମୋ ମୁଣ୍ଡ, ମୋ ଶରୀର, ମୋ ପାଦ, ମୋ କାନ, ମୋ ଆଖି' ଏପରି କହିବ । ଏହି ଶରୀରର ସମସ୍ତ ବସ୍ତୁକୁ 'ମୋର' କହୁଛ, ତେବେ 'ମୋର' କହିବାବାଲା 'ତୁମେ' କିଏ ? ଏହା ଭାବି ନାହଁ? ''My' ନେମ୍ ଇଜ୍ ଚନ୍ଦୁଲାଲ' କହିବା ଏବଂ ପୁଣି କହିବା 'ମୁଁ ଚନ୍ଦୁଲାଲ', ଏଥିରେ କିଛି ବିରୋଧାଭାସ ଲାଗୁନାହିଁ ?

**ପ୍ରଶ୍ନକର୍ତ୍ତା :** ଲାଗୁଛି ।

**ଦାଦାଶ୍ରୀ :** ତୁମେ ଚନ୍ଦୁଲାଲ୍ ଅଟ, କିନ୍ତୁ ଏଥିରେ 'I' ଏଣ୍ଡ 'My' ଉଭୟ

ଅଛନ୍ତି । ଏହି ‘I’ ଏଣ୍ଡ ‘My’ର ଦୁଇ ରେଲୱେଲାଇନ୍ ଅଲଗା ହିଁ ଅଟନ୍ତି । ପାରାଲାଲ୍(ସମାନ୍ତର) ହିଁ ରହିଥାନ୍ତି, କେବେ ବି ଏକାକାର ହୁଅନ୍ତି ହିଁ ନାହିଁ । ତଥାପି ତୁମେ ଏକାକାର ମାନୁଛ, ଏହାକୁ ବୁଝି ଏଥିରୁ ‘My’କୁ ସେପାରେଟ୍ କରିଦିଅ । ତୁମର ଯେଉଁ ‘My’ ଅଛି, ତା’କୁ ଏକ ପାର୍ଶ୍ୱରେ ରଖ । ‘My’ ହାର୍ଟ(ହୃଦୟ), ତେବେ ତା’କୁ ଏକ ପାର୍ଶ୍ୱରେ ରଖ । ଏହି ଶରୀରରୁ ଆଉ କ’ଣ କ’ଣ ସେପାରେଟ୍ କରିବାକୁ ହେବ ?

**ପ୍ରଶ୍ନକର୍ତ୍ତା :** ଗୋଡ଼, ଇନ୍ଦ୍ରୀୟ ଇତ୍ୟାଦି ।

**ଦାଦାଶ୍ରୀ :** ହଁ, ସବୁ । ପାଞ୍ଚ ଇନ୍ଦ୍ରୀୟ, ପାଞ୍ଚ କର୍ମେନ୍ଦ୍ରୀୟ ସବୁ । ଆଉ ପୁଣି ‘ମାଇଁ ମାଇଣ୍ଡ୍’ କୁହନ୍ତି ନା ‘ଆଇ ଆମ୍ ମାଇଣ୍ଡ୍’ କୁହନ୍ତି ?

**ପ୍ରଶ୍ନକର୍ତ୍ତା :** ‘ମାଇଁ ମାଇଣ୍ଡ’ କୁହନ୍ତି ।

**ଦାଦାଶ୍ରୀ :** ମୋ ବୁଦ୍ଧି କୁହନ୍ତି ନା ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ମୋ ଚିତ୍ତ କୁହନ୍ତି ନା ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ଆଉ ‘ମାଇଁ ଇଗୋଇଜିମ୍’ କୁହନ୍ତି ନା ‘ଆଇ ଆମ୍ ଇଗୋଇଜିମ୍’ କୁହନ୍ତି ?

**ପ୍ରଶ୍ନକର୍ତ୍ତା :** ‘ମାଇଁ ଇଗୋଇଜିମ୍’ ।

**ଦାଦାଶ୍ରୀ :** ‘ମାଇଁ ଇଗୋଇଜିମ୍’ କହିବା ତେବେ ତାହାକୁ ଅଲଗା କରିପାରିବା । କିନ୍ତୁ ଏହାର ଆଗକୁ ଯାହା ଅଛି, ସେଥିରେ ତୁମ ଭାଗ କ’ଣ, ତାହା ତୁମେ ଜାଣି ନାହଁ । ସେଥିପାଇଁ ପୁଣି ପୂର୍ଣ୍ଣ ରୂପରେ ସେପାରେସନ୍ ହୋଇପାରେ ନାହିଁ । ତୁମେ, ତୁମର କିଛି ସୀମା ପର୍ଯ୍ୟନ୍ତ ହିଁ ଜାଣି ପାରିବ । ତୁମେ ସ୍ଥୂଳବସ୍ତୁ ହିଁ ଜାଣିଛ, ସୂକ୍ଷ୍ମର ପରିଚୟ ହିଁ ନାହିଁ । ସୂକ୍ଷ୍ମକୁ ଅଲଗା କରିବା, ପୁଣି ସୂକ୍ଷ୍ମତରକୁ ଅଲଗା କରିବା, ତା’ପରେ ସୂକ୍ଷ୍ମତମକୁ ଅଲଗା କରିବା ତାହା ତ କେବଳ ଜ୍ଞାନୀପୁରୁଷଙ୍କ କାମ ।

କିନ୍ତୁ ଗୋଟିଏ-ଗୋଟିଏ କରି ସମସ୍ତ ସ୍ପେୟାର ପାର୍ଟସ୍ ଅଲଗା କରିଚାଲିବା ତେବେ 'I' ଏବଂ 'My' ଦୁହେଁ ଅଲଗା ହୋଇପାରିବେ ନା ? 'I' ଏବଂ 'My' ଦୁହିଁଙ୍କୁ ଅଲଗା କରିବା ପରେ ଶେଷରେ କ'ଣ ବଞ୍ଚିବ ? ଯଦି 'My' ଏକ ପାର୍ଶ୍ୱରେ ରଖିବା ତେବେ ଶେଷରେ କ'ଣ ବଞ୍ଚିଲା ?

**ପ୍ରଶ୍ନକର୍ତ୍ତା :** 'I'.

**ଦାଦାଶ୍ରୀ :** ସେହି 'I' ହିଁ ହେଉଛ ତୁମେ । ବାସ୍, ସେହି 'I'କୁ ରିୟଲାଇଜ(ଅନୁଭବ) କରିବାର ଅଛି ।

**ପ୍ରଶ୍ନକର୍ତ୍ତା :** ତେବେ ସେପାରେଟ୍ କରି ଏହା ବୁଝିବାକୁ ହେବ ଯେ ଯାହା ବାକି ରହିଲା ତାହା 'ମୁଁ' ଅଟେ ?

**ଦାଦାଶ୍ରୀ :** ହଁ, ସେପାରେଟ୍ କରିବା ପରେ ଯାହା ବାକି ରହିଲା, ତାହା ତୁମେ 'ନିଜେ', 'I' ତୁମେ ନିଜେ ହିଁ ଅଟ । ତା'ର ସନ୍ଧାନ ତ କରିବାକୁ ହେବ ନା ? ଅର୍ଥାତ 'I' ଏବଂ 'My'କୁ ଅଲଗା କରିବା, ତେବେ ଏହା ସହଜ ରାସ୍ତା ଅଟେ ନା ?

**ପ୍ରଶ୍ନକର୍ତ୍ତା :** ଏମିତିରେ ରାସ୍ତା ତ ସହଜ ଅଟେ, କିନ୍ତୁ ସେ ସୂକ୍ଷ୍ମତର ଆଉ ସୂକ୍ଷ୍ମତମ ବି ଅଲଗା ହେଲେ ତ ? ତାହା ଜ୍ଞାନୀଙ୍କ ବିନା ହେବ ନାହିଁ ନା ?

**ଦାଦାଶ୍ରୀ :** ହଁ, ତାହା ଜ୍ଞାନୀପୁରୁଷ ବତାଇ ଦେବେ । ସେଥିପାଇଁ ମୁଁ କୁହେ ଯେ, Separate 'I' and 'My' with Gnani's separator. ସେହି ସେପାରେଟରକୁ ଶାସ୍ତ୍ରକାର କ'ଣ କୁହନ୍ତି ? ଭେଦଜ୍ଞାନ କୁହନ୍ତି । ବିନା ଭେଦଜ୍ଞାନ ରେ ତୁମେ କିପରି ଅଲଗା କରିବ ? କେଉଁ କେଉଁ ବସ୍ତୁ ତୁମର ଏବଂ କ'ଣ କ'ଣ ତୁମର ନୁହେଁ, ଏ ଦୁଇଟିର ଭେଦଜ୍ଞାନ ତୁମର ନାହିଁ । ଭେଦଜ୍ଞାନ ଅର୍ଥାତ୍ ଏ ସବୁ 'ମୋର' ଏବଂ 'ମୁଁ' ଏମାନଙ୍କଠାରୁ ଅଲଗା । ସେଥିପାଇଁ ଜ୍ଞାନୀପୁରୁଷଙ୍କ ପାଖରେ, ତାଙ୍କ ସାନିଧ୍ୟରେ ରହିବା ତେବେ ଭେଦଜ୍ଞାନ ପ୍ରାପ୍ତି ହୋଇଯିବ, ଏବଂ ପୁଣି ଆମର ('I' ଏବଂ 'My') ସେପାରେଟ୍ ହୋଇଯିବ ।

'I' ଏବଂ 'My'କୁ ଅଲଗା କରିବା, ତେବେ ଏହା ବହୁତ ସହଜ ଅଟେ ନା ? ମୁଁ ଏ ଯେଉଁ ଉପାୟ ବତାଇଲି, ଏହା ଅନୁସାରେ ଅଧ୍ୟାତ୍ମ ସରଳ ଅଟେ ନା କଠିନ ? ନହେଲେ ଏହି କାଳର ଜୀବଙ୍କୁ ତ ଶାସ୍ତ୍ର ପଢୁ ପଢୁ ଦମ୍ ବାହାରିଯିବ ।

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ପରି ବ୍ୟକ୍ତିଙ୍କର ଆବଶ୍ୟକ ହେବ ନା, ବୁଝିବା ନିମନ୍ତେ ?

**ଦାଦାଶ୍ରୀ :** ହଁ, ଆବଶ୍ୟକ ହେବ । କିନ୍ତୁ ଜ୍ଞାନୀପୁରୁଷ ତ ଅଧିକ ନଥାନ୍ତି ନା ! ମାତ୍ର ଯେବେ କେବେ ଥିବେ, ସେତେବେଳେ ଆମେ ଆମର କାମ କାଢ଼ିନେବା । ଜ୍ଞାନୀପୁରୁଷଙ୍କ 'ସେପାରେଟର' ନେଇଯିବ ଘଣ୍ଟେ ଦୁଇ ଘଣ୍ଟା ପାଇଁ, ତାହାର ଭଡ଼ା-ଫଡ଼ା ନ ଥାଏ ! ସେଥିରେ ସେପାରେଟ୍ କରିଦେବ । ଏହା ଦ୍ୱାରା 'I' ଅଲଗା ହୋଇଯିବ, ଅନ୍ୟଥା ହେବ ନାହିଁ ନା ! 'I' ଅଲଗା ହେବା ପରେ ସବୁ କାମ ହୋଇଯିବ । ସମସ୍ତ ଶାସ୍ତ୍ରର ସାର ଏତିକି ହିଁ ଅଟେ ।

ଆତ୍ମା ହେବାର ଅଛି ତେବେ 'ମୋର'(My) ସବୁକିଛି ସମର୍ପିତ କରିଦେବାକୁ ପଡ଼ିବ । ଜ୍ଞାନୀପୁରୁଷଙ୍କୁ 'My' ସମର୍ପି ଦେବ, ତେବେ କେବଳ 'I' ତୁମ ପାଖରେ ରହିବ । 'I' with 'My' ତା'ର ନାମ ଜୀବାତ୍ମା । 'ମୁଁ ଅଛି ଏବଂ ଏ ସବୁ ମୋର' ତାହା ଜୀବାତ୍ମ୍ ଦଶା ଆଉ 'କେବଳ ମୁଁ ହିଁ ଅଛି ଏବଂ ମୋର କିଛି ନାହିଁ' ତାହା ପରମାତ୍ମ୍ ଦଶା । ଅର୍ଥାତ୍ 'My' ଯୋଗୁଁ ମୋକ୍ଷ ହେଉ ନାହିଁ । 'ମୁଁ କିଏ' ର ଜ୍ଞାନ ହେବା ପରେ 'My' ଚାଲିଯାଏ । 'My' ଚାଲିଗଲା ତେବେ ସବୁ ଚାଲିଗଲା ।

'My' ଇଜ୍ ରିଲେଟିଭ ଡିପାର୍ଟମେଣ୍ଟ ଏଣ୍ଡ୍ 'I' ଇଜ୍ ରିୟଲ । ଅର୍ଥାତ୍ 'I' ଟେମ୍ପରାରୀ ନୁହେଁ, 'I' ଇଜ୍ ପରମାନେଣ୍ଟ । 'My' ଇଜ୍ ଟେମ୍ପରାରୀ । ଅର୍ଥାତ୍ ତୁମକୁ 'I' ଖୋଜି ବାହାର କରିବାର ଅଛି ।

## (୪) ସଂସାରରେ *ଉପରୀ* କିଏ ?

### ଜ୍ଞାନୀ ହିଁ ପରିଚୟ କରାନ୍ତି 'ମୁଁ' ର

**ପ୍ରଶ୍ନକର୍ତ୍ତା :** 'ମୁଁ କିଏ' ଏହା ଜାଣିବାର ଯେଉଁ କଥା, ତାହା ଏହି ସଂସାରରେ ରହି କିପରି ସମ୍ଭବ ହୋଇପାରିବ ?

**ଦାଦାଶ୍ରୀ :** ତେବେ କେଉଁଠାରେ ରହି ତାହା ଜାଣିପାରିବା ? ସଂସାରକୁ ଛାଡ଼ି ଅନ୍ୟ କିଛି ଜାଗା ଅଛି କି ଯେଉଁଠାରେ ରହିହେବ ? ଏହି ଜଗତରେ ସମସ୍ତେ

ସଂସାରୀ ହିଁ ଅଟନ୍ତି ଏବଂ ସମସ୍ତେ ସଂସାରରେ ହିଁ ରୁହନ୍ତି । ଏଠାରେ 'ମୁଁ କିଏ ?' ଏହା ଜାଣିବା ପାଇଁ ମିଳିପାରିବ । 'ତୁମେ କିଏ' ଏହା ବୁଝିବାର ବିଜ୍ଞାନ ଅଛି ଏଠାରେ । ଏଠାକୁ ଆସିବ, ମୁଁ ତୁମକୁ ପରିଚୟ କରାଇ ଦେବି ।

ଆଉ ମୁଁ ତୁମକୁ ଏ ଯାହାସବୁ ପଚାରୁଛି, ତା' ମାନେ ମୁଁ ତୁମକୁ କହୁ ନାହିଁ ଯେ ତୁମେ ଏହିପରି କର । ତୁମ ଦ୍ୱାରା ହୋଇପାରିବ, ଏପରି ନୁହେଁ । ଅର୍ଥାତ୍ ମୁଁ ତୁମକୁ କ'ଣ କହୁଛି ଯେ ମୁଁ ତୁମର ସବୁ କରିଦେବି । ଏଥିପାଇଁ ତୁମେ ଚିନ୍ତା କର ନାହିଁ । ପ୍ରଥମେ ତ ଏହା ବୁଝିନେବା ଯେ ବାସ୍ତବରେ 'ଆମେ' କିଏ ଏବଂ କ'ଣ ଜାଣିବା ଯୋଗ୍ୟ ଅଟେ ? ସଠିକ୍ କଥା କ'ଣ ? କରେକ୍ଟନେସ୍ କ'ଣ ? ଦୁନିଆ କ'ଣ ? ଏ ସବୁ କ'ଣ ? ପରମାତ୍ମା କ'ଣ ?

ପରମାତ୍ମା ଅଛନ୍ତି ? ପରମାତ୍ମା ଅବଶ୍ୟ ଅଛନ୍ତି ଏବଂ ସେ ତୁମ ପାଖରେ ହିଁ ଅଛନ୍ତି । ବାହାରେ କେଉଁଠି ଖୋଜୁଛ ? କିନ୍ତୁ କେହି ଯଦି ଆମର ଏହି ଦ୍ୱାର ଖୋଲିଦେବ ତେବେ ଦର୍ଶନ କରିପାରିବା ନା ! ଏହି ଦ୍ୱାର ଏପରି ବନ୍ଦ ହୋଇଯାଇଛି ଯେ ନିଜଦ୍ୱାରା ଖୋଲିପାରିବ, ଏପରି ସମ୍ଭବ ହିଁ ନୁହେଁ । ତାହା ତ' ଯିଏ ନିଜେ ପାରି ହୋଇ ସାରିଥିବେ, ସେହିପରି ତରଣତାରଣ ଜ୍ଞାନୀପୁରୁଷଙ୍କର ହିଁ କାମ ।

## ନିଜର ହିଁ ଭୁଲ୍ ନିଜର ଉପରୀ

ଭଗବାନ ତ' ତୁମର ସ୍ୱରୂପ ଅଟେ । ତୁମର କେହି ଉପରୀ ନାହିଁ, କୋଉ ବୋପା ବି ଉପରୀ ନାହିଁ । ତୁମର କେହି କିଛି କରିବାବାଲା ହିଁ ନାହିଁ । ତୁମେ ସ୍ୱତନ୍ତ୍ର ହିଁ ଅଟ, କେବଳ ନିଜର ଭୁଲ୍ ଯୋଗୁଁ ତୁମେ ବନ୍ଧା ହୋଇଛ ।

ତୁମର କେହି ଉପରୀ ନାହିଁ ଏବଂ ତୁମ ଉପରେ କୌଣସି ଜୀବର ଦଖଲ(ହସ୍ତକ୍ଷେପ) ମଧ୍ୟ ନାହିଁ । ଏତେ ସବୁ ଜୀବ ଅଛନ୍ତି, ମାତ୍ର କୌଣସି ଜୀବର ତୁମ ଉପରେ ଦଖଲ ନାହିଁ । ଆଉ ଏହି ଲୋକମାନେ ଯେଉଁ ଦଖଲ କରନ୍ତି, ତାହା ତୁମ ଭୁଲ କାରଣରୁ ଦଖଲ କରନ୍ତି । ତୁମେ ଯେଉଁ (ପୂର୍ବରେ) ଦଖଲ କରିଥିଲ, ଏହା ତାହାର ଫଳ । ଏହା ମୁଁ ନିଜେ 'ଦେଖିକରି' କହୁଛି ।

ମୁଁ ଏହି ଦୁଇଟି ବାକ୍ୟ ଉପରେ ଗ୍ୟାରେଣ୍ଟି ଦେଉଛି, ଏହା ଦ୍ୱାରା ମନୁଷ୍ୟ ମୁକ୍ତ ରହିପାରିବ । ମୁଁ କ'ଣ କହୁଛି ଯେ,

'ତୁମ ଉପରୀ ଦୁନିଆରେ କେହି ନାହିଁ । ତୁମ ଉପରୀ ତୁମର ବ୍ଲଣ୍ଡର୍ସ ଏବଂ ତୁମର ମିସ୍ଟେକ୍ସ ଅଟନ୍ତି । ଏ ଦୁହେଁ ନଥିବେ ତେବେ ତୁମେ ପରମାତ୍ମା ହିଁ ଅଟ ।'

ଆଉ 'ତୁମ ଉପରେ କାହାର ତିଳେମାତ୍ର ବି ଦଖଲ ନାହିଁ । କୌଣସି ଜୀବ କୌଣସି ଜୀବ ଉପରେ କିଞ୍ଚିତମାତ୍ର ବି ଦଖଲ କରିପାରିବ ଏପରି ସ୍ଥିତିରେ ହିଁ ନାହିଁ, ଏପରି ଅଟେ ଏହି ଜଗତ ।'

ଏହି ଦୁଇ ବାକ୍ୟ ସବୁ ସମାଧାନ ଆଣିଦିଅନ୍ତି ।

# (୫) ଜଗତରେ କର୍ତ୍ତା କିଏ ?

## ଜଗତକର୍ତ୍ତାର ବାସ୍ତବିକତା

ଫ୍ୟାକ୍ଟ(ସତ୍ୟତା) ନ ଜାଣିବା ଯୋଗୁଁ ହିଁ ଏ ସବୁ ଜଟିଳତା ହୋଇଛି । ଏବେ ତୁମକୁ, 'ଯାହା ଜାଣିଛ' ତାହା ଜାଣିବାର ଅଛି, ନା 'ଯାହା ଜାଣି ନାହଁ' ତାହା ଜାଣିବାର ଅଛି ?

ଜଗତ କ'ଣ ? କିପରି ତିଆରି ହେଲା ? ତିଆରି କରିବାବାଲା କିଏ ? ଆମକୁ ଏହି ଜଗତ ସହିତ କ'ଣ ନେବା-ଦେବା ? ଆମ ସହିତ ଆମ ସମ୍ପର୍କିତମାନଙ୍କର କ'ଣ ନେବା-ଦେବା ? ବିଜ୍‌ନେସ କେଉଁ ଆଧାରରେ ଚାଲିଛି ? ମୁଁ କର୍ତ୍ତା ଅଟେ ନା ଅନ୍ୟ କେହି ? ଏ ସବୁ ଜାଣିବା ତ' ଜରୁରୀ ନା ?

**ପ୍ରଶ୍ନକର୍ତ୍ତା :** ହଁ ଆଜ୍ଞା ।

**ଦାଦାଶ୍ରୀ :** ତେଣୁ ଏଥିରେ ପ୍ରାରମ୍ଭରୁ ତୁମକୁ କ'ଣ ଜାଣିବାର ଅଛି, ତାହା ବିଷୟରେ ପ୍ରଥମେ ଆଲୋଚନା କରିବା । ଜଗତ କିଏ ତିଆରି କରିଥିବ, ତୁମକୁ କ'ଣ ଲାଗୁଛି ? କିଏ ତିଆରି କରିଥିବ ଏପରି ସମସ୍ୟାଭରା ଜଗତ ? ତୁମର କ'ଣ ମତ ?

**ପ୍ରଶ୍ନକର୍ତ୍ତା :** ଈଶ୍ୱର ହିଁ ତିଆରି କରିଥିବେ ।

**ଦାଦାଶ୍ରୀ :** ତେବେ ପୁଣି ସାରା ସଂସାରକୁ ଚିନ୍ତାରେ କାହିଁକି ରଖିଲେ ? ଚିନ୍ତାରୁ ମୁକ୍ତ ଅବସ୍ଥା ହିଁ ନାହିଁ ।

**ପ୍ରଶ୍ନକର୍ତ୍ତା :** ସବୁଲୋକ ଚିନ୍ତା ତ କରନ୍ତି ନା ?

**ଦାଦାଶ୍ରୀ :** ହଁ, କିନ୍ତୁ ସେ ଏହି ସଂସାର ତିଆରି କଲେ ତେବେ ଚିନ୍ତାବାଲା କାହିଁକି ତିଆରି କଲେ ? ଧରିଆଣ ତାଙ୍କୁ, ସିବିଆଇବାଲାଙ୍କୁ ପଠାଇ । କିନ୍ତୁ ଭଗବାନ ଦୋଷୀ ନୁହନ୍ତି ! ଏ ତ ଲୋକମାନେ ତାଙ୍କୁ ଦୋଷୀ କରି ଦେଇଛନ୍ତି ।

ବାସ୍ତବରେ, ଗଡ୍ ଇଜ୍ ନଟ୍ କ୍ରିଏଟର ଅଫ ଦିସ୍ ଓ୍ୱାର୍ଲ୍ଡ ଆଟ୍ ଅଲ । ଓନ୍‌ଲୀ ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ ଏଭିଡେନ୍ସ ଅଟେ । ଅର୍ଥାତ୍ ଏହା ତ ସବୁ ପ୍ରାକୃତିକ ରଚନା ଅଟେ । ତାହାକୁ ଗୁଜରାଟୀରେ ମୁଁ 'ବ୍ୟବସ୍ଥିତ ଶକ୍ତି' କୁହେ । ଏହା ତ ବହୁତ ସୂକ୍ଷ୍ମ କଥା ଅଟେ ।

## ତାହାକୁ ମୋକ୍ଷ କୁହନ୍ତି ହିଁ ନାହିଁ

ଛୋଟ ପିଲା ହେଉ ସେ ମଧ୍ୟ କୁହେ ଯେ, 'ଭଗବାନ ତିଆରି କରିଛନ୍ତି' । ବଡ଼ ସନ୍ଥ ହୁଅନ୍ତୁ ସେ ମଧ୍ୟ କୁହନ୍ତି 'ଭଗବାନ ତିଆରି କରିଛନ୍ତି' । ଏହି କଥା ଲୌକିକ ଅଟେ, ଅଲୌକିକ(ରିୟଲ୍) ନୁହେଁ ।

ଭଗବାନ ଯଦି କ୍ରିଏଟର(ସୃଷ୍ଟିକର୍ତ୍ତା) ହୋଇଥାନ୍ତେ ତେବେ ସେ ସର୍ବଦା ଆମର ଉପରୀ ହୋଇ ରହିଥାନ୍ତେ ଏବଂ ମୋକ୍ଷ ପରି କିଛି ଜିନିଷ ନଥାନ୍ତା । କିନ୍ତୁ ମୋକ୍ଷ ଅଛି । ଭଗବାନ କ୍ରିଏଟର ନୁହନ୍ତି । ମୋକ୍ଷକୁ ବୁଝୁଥିବା ଲୋକେ ଭଗବାନଙ୍କୁ କ୍ରିଏଟର ମାନନ୍ତି ନାହିଁ । 'ମୋକ୍ଷ' ଏବଂ 'ଭଗବାନ କ୍ରିଏଟର' ଏହି ଦୁଇଟି ବିରୋଧାଭାସି କଥା ଅଟେ । କ୍ରିଏଟର ତ' ସବୁଦିନ ପାଇଁ ଉପକାରୀ ହେଲା ଏବଂ ଉପକାରୀ ହେଲା ସେଥିପାଇଁ ଶେଷ ପର୍ଯ୍ୟନ୍ତ ଉପରୀକୁ ଉପରୀ ହିଁ ରହିବ ।

## ତେବେ ଭଗବାନଙ୍କୁ କିଏ ତିଆରି କଲା ?

ଭଗବାନ ତିଆରି କରିଛନ୍ତି, ଯଦି ଏପରି ଆମେ ଅଲୌକିକ ଭାବେ କହିବା ତେବେ 'ଲଜିକ୍'ବାଲା ଲୋକେ ଆମକୁ ପଚାରିବେ ଯେ 'ଭଗବାନଙ୍କୁ କିଏ ତିଆରି କଲା ?' ଏଥିପାଇଁ ପ୍ରଶ୍ନ ସୃଷ୍ଟି ହୁଏ । ଲୋକମାନେ ମୋତେ କୁହନ୍ତି, 'ଆମକୁ ଲାଗୁଛି ଯେ ଭଗବାନ ହିଁ ଦୁନିଆର କର୍ତ୍ତା ଅଟନ୍ତି । ଆପଣ ତ' ମନା କରୁଛନ୍ତି, କିନ୍ତୁ ଆପଣଙ୍କ କଥା ସ୍ୱୀକାର ହେଉନାହିଁ ।' ତେବେ ମୁଁ ପଚାରେ, ଯଦି ମୁଁ ସ୍ୱୀକାର କରିବି ଯେ

ଭଗବାନ କର୍ତ୍ତା ଅଟନ୍ତି, ତେବେ ସେହି ଭଗବାନଙ୍କୁ କିଏ ତିଆରି କଲା ? ଏହା ତୁମେ ମୋତେ କୁହ । ଆଉ ସେହି ତିଆରି କରିବାବାଲାକୁ କିଏ ତିଆରି କଲା ? କେହି ବି କର୍ତ୍ତା ହେଲା ତେବେ ତା'ର କର୍ତ୍ତା ରହିବା ଉଚିତ, ଏହା 'ଲଜିକ୍' ଅଟେ । କିନ୍ତୁ ପୁଣି ତାହାର ଏଣ୍ଡ୍(ଅନ୍ତ) ହିଁ ଆସିବ ନାହିଁ, ସେଥିପାଇଁ ଏ କଥା ଭୁଲ ଅଟେ ।

## ଆଦି ନାହିଁ, କି ଅନ୍ତ ନାହିଁ, ଜଗତର....

ଅର୍ଥାତ୍ କାହାର ତିଆରି କରିବା ବିନା ତିଆରି ହୋଇଛି, କେହି ତିଆରି କରି ନାହାନ୍ତି ଏହାକୁ । କେହି ତିଆରି କରି ନାହାନ୍ତି, ଏଣୁ ଏବେ କାହାକୁ ପଚ୍ଚରିବା ଏହା ବିଷୟରେ ? ମୁଁ ମଧ୍ୟ ଖୋଜୁଥିଲି ଯେ କିଏ ଏହାର ଉତ୍ତରଦାୟୀ ଅଟେ, ଯିଏ ଏ ସବୁ ଝାମେଲା କରିଛି ! ମୁଁ ସବୁ ଜାଗାରେ ଖୋଜିଲି, କିନ୍ତୁ କେଉଁଠି ମିଳିଲା ନାହିଁ ।

ମୁଁ 'ଫରେନ୍'ର ସାଇଣ୍ଟିଷ୍ଟମାନଙ୍କୁ କହିଲି ଯେ, 'ଗଡ୍ କ୍ରିଏଟର ଅଟନ୍ତି, ଏହାକୁ ପ୍ରମାଣିତ କରିବା ପାଇଁ ଆପଣ ମୋ ସହିତ କିଛି ସମୟ ଆଲୋଚନା କରନ୍ତୁ । ଯଦି ସେ କ୍ରିଏଟର ଅଟନ୍ତି ତେବେ ସେ କେଉଁ ମସିହାରେ ତିଆରି କରିଥିଲେ ମୋତେ କୁହନ୍ତୁ । ତେବେ ସେମାନେ କୁହନ୍ତି, 'ମସିହା ଆମକୁ ଜଣାନାହିଁ ।' ମୁଁ ପଚାରିଲି, 'କିନ୍ତୁ ତାହାର ବିଗିନିଙ୍ଗ୍ ହୋଇଛି ନା ନାହିଁ ?' ତେବେ କୁହନ୍ତି 'ହଁ ବିଗିନିଙ୍ଗ୍ ହୋଇଛି । କ୍ରିଏଟର କହିଲ, ଅର୍ଥାତ୍ ବିଗିନିଙ୍ଗ୍ ଥିବ ନିଶ୍ଚିତ !' 'ଯାହାର ବିଗିନିଙ୍ଗ୍ ଥିବ, ତାହାର ଅନ୍ତ ମଧ୍ୟ ହେବ । କିନ୍ତୁ ଏହା ତ' ବିନା ଏଣ୍ଡ୍‌ବାଲା ଜଗତ । ବିଗିନିଙ୍ଗ୍ ହୋଇନାହିଁ ତେବେ ପୁଣି ଏଣ୍ଡ୍ କେମିତି ହେବ ? ଏହା ତ' ଅନାଦି ଅନନ୍ତ ଅଟେ । ଯାହାର ବିଗିନିଙ୍ଗ୍ ହୋଇନଥିବ, ତାହାର ତିଆରି କରିବାବାଲା କେହି ହୋଇପାରିବେ ନାହିଁ, ଏପରି ଲାଗୁ ନାହିଁ ?

## ଭଗବାନଙ୍କ ସଠିକ୍ ଠିକଣା

ଏ ଫରେନ୍‌ର ସାଇଣ୍ଟିଷ୍ଟମାନେ ମୋତେ ପଚ୍ଚରିଲେ ଯେ, 'ତେବେ କ'ଣ ଭଗବାନ ନାହାନ୍ତି ?' ମୁଁ କହିଲି, 'ଭଗବାନ ଯଦି ନଥାନ୍ତେ, ତେବେ ଏହି ଜଗତରେ ଯେଉଁ ଭାବନା ସବୁ ଅଛି, ସୁଖ ଏବଂ ଦୁଃଖର ଯେଉଁ ଅନୁଭବ ହେଉଛି, ସେ ସବୁର କିଛି ଅନୁଭବ ହିଁ ନଥାନ୍ତା । ସେଥିପାଇଁ ଭଗବାନ ଅବଶ୍ୟ ଅଛନ୍ତି ।' ସେମାନେ ମୋତେ

ପଗ୍ଚରିଲେ, 'ଭଗବାନ କେଉଁଠି ରୁହନ୍ତି ?' ମୁଁ କହିଲି, 'ତୁମକୁ କେଉଁଠି ଲାଗୁଛି ?' ସେମାନେ କହିଲେ 'ଉପରେ' । ମୁଁ ପଗ୍ଚରିଲି, 'ସେ ଉପରେ କେଉଁଠି ରହୁଛନ୍ତି ? ତାଙ୍କ ଗଳି ନମ୍ବର କେତେ ? କେଉଁ ଗଳି, ତୁମେ ଜାଣିଛ ? ଚିଠି ପହଞ୍ଚିଲା ଭଳି ସଠିକ୍ ଆଡ୍ରେସ୍ ଅଛି ତୁମ ପାଖରେ ?' ଉପରେ ତ' କୋଉ ବୋପା ବି ନାହିଁ । ସବୁ ଜାଗା ମୁଁ ବୁଲି ଆସିଲି । ସବୁଲୋକ କହୁଥିଲେ ଯେ ଉପରେ ଅଛନ୍ତି, ଉପରକୁ ଆଙ୍ଗୁଳି ଦେଖାଉଥିଲେ । ଏହାଦ୍ୱାରା ମୋତେ ଲାଗିଲା ଯେ ସମସ୍ତେ କହୁଛନ୍ତି, ସେଥିପାଇଁ କିଛି ଥିବ ନିଶ୍ଚୟ । ସେଥିପାଇଁ ମୁଁ ଉପରେ ସବୁ ଜାଗା ଖୋଜି ଆସିଲି, ତେବେ ଉପରେ ତ' ଖାଲି ଆକାଶ ହିଁ ଅଛି, ଉପରେ କେହି ମିଳିଲେ ନାହିଁ । ଉପରେ ତ କେହି ରୁହନ୍ତି ନାହିଁ । ଏବେ ସେହି ଫରେନ୍‌ର ସାଇଣ୍ଟିଷ୍ଟମାନେ ମୋତେ କହିଲେ 'ଭଗବାନଙ୍କ ସଠିକ ଆଡ୍ରେସ୍ ବତାଇବେ ?' ମୁଁ କହିଲି, 'ଲେଖି ନିଅନ୍ତୁ । God is in every creature, whether 'visible' or 'inivisible' not in creation.' (ଭଗବାନ, ଆଖିକୁ ଦେଖାଯାଉଥିବା ବା ନ ଦେଖାଯାଉଥିବା, ପ୍ରତ୍ୟେକ ଜୀବ ମଧ୍ୟରେ ବିଦ୍ୟମାନ ଅଟନ୍ତି, ମାତ୍ର ମାନବ ନିର୍ମିତ କୌଣସି ବସ୍ତୁରେ ନୁହଁ ।)

ଏହି ଟେପ୍‌ରେକର୍ଡରକୁ 'କ୍ରିଏସନ' କୁହାଯାଏ । ଯେତେସବୁ ମ୍ୟାନ୍‌ମେଡ଼(ମାନବ ନିର୍ମିତ) ବସ୍ତୁ ଅଛି, ମନୁଷ୍ୟ ଦ୍ୱାରା ତିଆରି ହୋଇଥିବା ବସ୍ତୁ ଅଛି, ସେଥିରେ ଭଗବାନ ନାହାନ୍ତି । ଯାହା ପ୍ରାକୃତିକ ରଚନା ଅଟେ, ସେଥିରେ ଭଗବାନ ଅଛନ୍ତି ।

## ମନୋନୁକୂଳର ସିଦ୍ଧାନ୍ତ

କେତେ ସବୁ ସଂଯୋଗ ଏକାଠି ହେବା ପରେ ଯାଇ କୌଣସି କାର୍ଯ୍ୟ ହୋଇଥାଏ, ଅର୍ଥାତ୍ ଏହା ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ ଅଟେ । ସେଥିରେ ଇଗୋଇଜିମ୍ କରି, 'ମୁଁ କଲି' କହି ଗର୍ବ କରନ୍ତି । କିନ୍ତୁ ଭଲ ହେଲେ 'ମୁଁ କଲି' ଆଉ ଖରାପ ହେଲେ 'ମୋ ସଂଯୋଗ ଏବେ ଠିକ୍ ନାହିଁ' ଏପରି ଆମ ଲୋକମାନେ କୁହନ୍ତି ନା' ? ସଂଯୋଗକୁ ମାନନ୍ତି ନା, ଆମ ଲୋକେ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ଲାଭ ହୁଏ ତେବେ ତାହାର ଗର୍ବରସ ନିଜେ ଚାଖେ ଆଉ ଯେବେ କ୍ଷତି ହୁଏ ତେବେ କିଛି ବାହାନା ବନାଏ । ଆମେ ଯଦି ପଚାରିବା, 'ସେଠଜୀ, ଏପରି କାହିଁକି ହୋଇଗଲା ଏବେ ?' ତେବେ କହିବେ, 'ଭଗବାନ ରୁଷିଛନ୍ତି ।'

**ପ୍ରଶ୍ନକର୍ତ୍ତା :** ମନୋନୁକୂଳର ସିଦ୍ଧାନ୍ତ ହୋଇଗଲା ।

**ଦାଦାଶ୍ରୀ :** ହଁ, ମନୋନୁକୂଳ, ମାତ୍ର ଏପରି ଆରୋପ ତାଙ୍କ ଉପରେ (ଭଗବାନ ଉପରେ) ଲଗାଇବା ଉଚିତ୍ ନୁହେଁ । ଓକିଲ ଉପରେ ଆରୋପ ଲଗାଇବା କିମ୍ବା ଅନ୍ୟ କାହା ଉପରେ ଆରୋପ ଲଗାଇବା ତାହା ତ ଚଳିବ, କିନ୍ତୁ ଭଗବାନଙ୍କ ଉପରେ କ'ଣ ଆରୋପ ଲଗାଇ ପାରିବା ? ଓକିଲ ତ କେସ୍ ଫାଇଲ କରି ହିସାବ ମାଗେ କିନ୍ତୁ ଏହାର କେସ୍ କିଏ ଫାଇଲ କରିବ ? ଏହାର ଫଳ ତ ଆସନ୍ତା ଜନ୍ମରେ (ସଂସାରର) ଭୟଙ୍କର ବନ୍ଧନ ମିଳିବ । ଭଗବାନଙ୍କ ଉପରେ କ'ଣ ଆରୋପ ଲଗାଇ ପାରିବା ?

**ପ୍ରଶ୍ନକର୍ତ୍ତା :** ଲଗାଇ ପାରିବା ନାହିଁ ।

**ଦାଦାଶ୍ରୀ :** ନଚେତ୍ କହିବ, 'ଷ୍ଟାର୍ସ ଫେବରେବଲ୍ (ଗ୍ରହ ଅନୁକୁଳ) ନାହିଁ ।' ନହେଲେ 'ପାର୍ଟନର ତେଢ଼ା ଅଟେ' ଏପରି କୁହେ । ନହେଲେ 'ପୁଅର ବୋହୁ ଅଶୁଭ ଅଟେ' ଏପରି କୁହେ । ମାତ୍ର ନିଜ ମୁଣ୍ଡ ଉପରକୁ ଆସିବାକୁ ଦିଏ ନାହିଁ ! ନିଜ ମୁଣ୍ଡକୁ କେବେ ଦୋଷ ନିଏ ନାହିଁ । ଏହି ବିଷୟରେ ମୋର ଜଣେ ଫରେନ୍‌ବାଲା(ବିଦେଶୀ)ଙ୍କ ସହିତ ଆଲୋଚନା ହୋଇଥିଲା । ସେ ପଚାରିଲେ ଯେ 'ଆପଣଙ୍କ ଇଣ୍ଡିଆନ ଲୋକ କାହିଁକି ନିଜ ମୁଣ୍ଡ ଉପରକୁ ଦୋଷ ଆସିବାକୁ ଦିଅନ୍ତି ନାହିଁ ?' ମୁଁ କହିଲି, 'ଏହା ହିଁ ଇଣ୍ଡିଆନ ପଜଲ୍ ଅଟେ । ଇଣ୍ଡିଆର ସବୁଠାରୁ ବଡ଼ ପଜଲ୍(ସମସ୍ୟା) ଏହା ହିଁ ଅଟେ ।'

## ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ ଏଭିଡେନ୍ସ

ସେଥିପାଇଁ ଆଲୋଚନା କର, ଯାହା କିଛି ବି ଆଲୋଚନା କରିବାର ଅଛି ସବୁ କର । ଏପରି ଆଲୋଚନା କର ଯାଦ୍ୱାରା ତୁମର ସବୁ ସଂଶୟ ଦୂର ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ଏହି 'ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ' ବୁଝି ପାରିଲି ନାହିଁ ।

**ଦାଦାଶ୍ରୀ :** ଏ ସବୁ ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ (ବୈଜ୍ଞାନିକ ସଂଯୋଗଯୁକ୍ତ ପ୍ରମାଣ) ଆଧାରରେ ହୁଏ । ସଂସାରରେ ଗୋଟିଏ ବି ପରମାଣୁ ଚେଞ୍ଜ୍ ହୋଇ ପାରିବ, ଏପରି ସମ୍ଭବ ନୁହେଁ । ଏବେ ତୁମେ ଭୋଜନ କରିବା ପାଇଁ ବସିବ, ତେବେ ତୁମକୁ ଜଣା ନାହିଁ ଯେ ମୁଁ କ'ଣ ଖାଇବାକୁ ଯାଉଛି ? ତିଆରି କରିବାବାଲା ଜାଣିନାହିଁ ଯେ କାଲି ଖାଇବାରେ କ'ଣ ରାନ୍ଧିବି ? ଏହା କିପରି ହୋଇଯାଉଛି, ଏହା ହିଁ ଆଶ୍ଚର୍ଯ୍ୟ ଅଟେ । ତୁମ ଦ୍ୱାରା କେତେ ଖିଆଯିବ ଏବଂ କେତେ ନାହିଁ, ତାହା ସବୁ ପରମାଣୁ ମାତ୍ର, ନିର୍ଦ୍ଧାରିତ ଅଟେ ।

ତୁମେ ଆଜି ମୋତେ ଭେଟିଲ ନା, ଏହା କେଉଁ ଆଧାରରେ ଭେଟି ପାରିଲ ? ଓନ୍‌ଲୀ ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ୍ ଏଭିଡେନ୍ସ ଅଟେ । ଅତି ଅତି ଗୁହ୍ୟ(ଗହନ) କାରଣ ଅଟେ । ସେହି କାରଣକୁ ଖୋଜି ବାହାର କର ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ତାହା ଖୋଜିବୁ କିପରି ?

**ଦାଦାଶ୍ରୀ :** ଯେପରି ଏବେ ତୁମେ ଏଠାକୁ ଆସିଲ, ସେଥିରେ ତୁମ ଅଧିନରେ କିଛି ନାହିଁ । ତାହା ତ' ତୁମ ମାନ୍ୟତା ଅଟେ, ଇଗୋଇଜିମ୍ କର ଯେ, 'ମୁଁ ଆସିଲି ଏବଂ ଗଲି ।' ଏ ଯେଉଁ ତୁମେ କହୁଛ, 'ମୁଁ ଆସିଲି' ଆଉ ମୁଁ ଯଦି କୁହେ, 'କାଲି କାହିଁକି ଆସି ନଥିଲ ?' ତେବେ ଏପରି ଗୋଡ଼ ଦେଖାଇବେ, ଏଥିରୁ କ'ଣ ବୁଝାଯିବ ?

**ପ୍ରଶ୍ନକର୍ତ୍ତା :** ଗୋଡ଼ ବିନ୍ଧୁଥିଲା ।

**ଦାଦାଶ୍ରୀ :** ହଁ, ଗୋଡ଼ ବିନ୍ଧୁଥିଲା । ଗୋଡ଼ର ବାହାନା କରେ ତେବେ ଆମେ ବୁଝିଯିବାନି ଯେ ଆସିବାବାଲା ତୁମେ, ନା ଗୋଡ଼ ?

**ପ୍ରଶ୍ନକର୍ତ୍ତା :** କିନ୍ତୁ 'ମୁଁ ହିଁ ଆସିଲି' କୁହାଯିବ ନା ?

**ଦାଦାଶ୍ରୀ :** ତୁମେ ହିଁ ଆସିଛ । ନୁହେଁ ? ଯଦି ଗୋଡ଼ ବିନ୍ଧୁଥିବ ତେବେ ମଧ୍ୟ ତୁମେ ଆସିବ ?

**ପ୍ରଶ୍ନକର୍ତ୍ତା :** ମୋର ନିଜର ଇଚ୍ଛାଥିଲା ଆସିବା ପାଇଁ, ସେଥିପାଇଁ ଆସିଛି ।

**ଦାଦାଶ୍ରୀ :** ହଁ, ଇଚ୍ଛା ଥିଲା ତୁମର, ସେଥିପାଇଁ ଆସିଲ । କିନ୍ତୁ ଏ ଗୋଡ଼ ହାତ ସବୁ ଠିକ୍ ଥିଲା, ସେଥିପାଇଁ ଆସି ପାରିଲ ନା ? ଠିକ୍ ନଥାନ୍ତା ଯଦି ?

**ପ୍ରଶ୍ନକର୍ତ୍ତା :** ତେବେ ତ ଆସି ପାରି ନଥାନ୍ତି, ଠିକ୍ କଥା ।

**ଦାଦାଶ୍ରୀ :** ଅର୍ଥାତ ତୁମେ ଏକଲା ଆସି ପାରିବ ? ଯେପରି ଜଣେ ବ୍ୟକ୍ତି ଶଗଡ଼ରେ ବସି ଏଠାକୁ ଆସେ ଏବଂ କୁହେ 'ମୁଁ ଆସିଲି, ମୁଁ ଆସିଲି ।' ସେତେବେଳେ ମୁଁ ପଚାରେ, 'ଏ ତୁମ ଗୋଡ଼ରେ ତ' ପାରାଲିସିସ୍ ହୋଇଛି, ତେବେ ତୁମେ ଆସିଲ କିପରି ?' ସେତେବେଳେ କୁହେ, 'ଶଗଡ଼ରେ ଆସିଲି । କିନ୍ତୁ ମୁଁ ହିଁ ଆସିଲି, ମୁଁ ହିଁ ଆସିଲି ।' 'ଆରେ ! କିନ୍ତୁ ଶଗଡ଼ ଆସିଲା ନା' ତୁମେ ଆସିଲ ?' ତେବେ କୁହେ, 'ଶଗଡ଼ ଆସିଲା ।' ପୁଣି ମୁଁ କୁହେ କି, 'ଶଗଡ଼ ଆସିଲା ନା ବଳଦ ଆସିଲେ ?'

ଅର୍ଥାତ୍ କଥା କେଉଁଠୁ କେଉଁ ପର୍ଯ୍ୟନ୍ତ ଏ ତ ! କିନ୍ତୁ ଦେଖ ଓଲଟା ମାନିନେଇଛି ନା ! ସବୁ ସଂଯୋଗ ଅନୁକୂଳ ହେବ, ତେବେ ଆସିପାରିବ, ନହେଲେ ଆସିପାରିବ ନାହିଁ ।

ମୁଣ୍ଡ ବିନ୍ଧୁଥିବ ତେବେ, ତୁମେ ଆସିଥିଲେ ମଧ୍ୟ ଫେରିଯିବ । ଯଦି ଆମେ ହିଁ ଆସିବା-ଯିବାବାଲା ଅଟନ୍ତି, ତେବେ ମୁଣ୍ଡ ବିନ୍ଧାର ବାହାନା କରି ପାରିବା ନାହିଁ ନା ? ତାହାଲେ ମୁଣ୍ଡ ଆସିଥିଲା ନା' ତୁମେ ଆସିଥିଲ ? ଯଦି କେହି ରାସ୍ତାରେ ଭେଟେ ଏବଂ କୁହେ, 'ଚାଲ ଚନ୍ଦୁଲାଲ ମୋ ସହିତ' ତେବେ ମଧ୍ୟ ତୁମେ ଫେରିଯିବ । ଏଣୁ ଯଦି ସଂଯୋଗ ଅନୁକୂଳ ଥିବ, ଏଠାରେ ପହଞ୍ଚିବା ପର୍ଯ୍ୟନ୍ତ କେହି ଅଟକାଇବାବାଲା ନ ମିଳିବେ ତେବେଯାଇ ଆସିପାରିବା ।

## ନିଜର ସତ୍ତା କେତେ ?

ତୁମେ ତ' କେବେ ବି ଖାଇ ନାହଁ ! ଏହା ତ' ସବୁ ଚନ୍ଦୁଲାଲ ଖାଆନ୍ତି ଏବଂ ତୁମେ ମନରେ ମାନ ଯେ ମୁଁ ଖାଇଲି । ଚନ୍ଦୁଲାଲ ଖାଆନ୍ତି ଏବଂ ପାଇଖାନା ମଧ୍ୟ ଚନ୍ଦୁଲାଲ ଯାଆନ୍ତି । ବିନା କାରଣରେ ଆମେ ଏଥିରେ ଫସିଛେ । ତୁମେ ବୁଝି ପାରୁଛ ?

**ପ୍ରଶ୍ନକର୍ତ୍ତା :** ବୁଝାଇ ଦିଅନ୍ତୁ ।

**ଦାଦାଶ୍ରୀ :** ଏହି ସଂସାରରେ କୌଣସି ମନୁଷ୍ୟ ଏପରି ଜନ୍ମ ହୋଇନାହିଁ ଯାହାର ପାଇଖାନା ଯିବା ପାଇଁ ନିଜର ସ୍ୱତନ୍ତ୍ର ସତ୍ତା(ଶକ୍ତି) ଥିବ । ପାଇଖାନା ଯିବା ପାଇଁ ବି କାହାର ସ୍ୱତନ୍ତ୍ର ସତ୍ତା ନାହିଁ, ତେବେ ପୁଣି ଆଉ କେଉଁ ସତ୍ତା ଥିବ ? ଏ ତ,

ଯେପର୍ଯ୍ୟନ୍ତ ନିଜ ଇଚ୍ଛା ଅନୁସାରେ ଅଳ୍ପ ବହୁତ ହେଉଥାଏ, ତେବେ ମନରେ ମାନି ନିଅନ୍ତି ଯେ ମୋ ଦ୍ୱାରା ହିଁ ହେଉଛି ସବୁକିଛି । କେବେ ଯଦି ଅଟକିଯିବ ନା', ତେବେ ଜଣାପଡ଼ିବ ।

ମୁଁ ଫରେନ୍ ରିଟର୍ଣ୍ଣ ଡକ୍ଟରଙ୍କୁ ଏଠି ବଡ଼ୋଦା(ଗୁଜରାଟ ର ଏକ ସହର)କୁ ଡକାଇଥିଲି, ଦଶ-ବାର ଜଣଙ୍କୁ । ସେମାନଙ୍କୁ ମୁଁ କହିଲି, 'ପାଇଖାନା ଯିବାପାଇଁ ମଧ୍ୟ ସ୍ୱତନ୍ତ୍ର ଶକ୍ତି ତୁମର ନାହିଁ ।' ଏହା ଶୁଣି ସେମାନଙ୍କ ମଧ୍ୟରେ ହଇଚଇ ପଡ଼ିଗଲା । ତା'ପରେ କହିଲି, ତାହା ତ କେବେ ଅଟକିଗଲେ ଜଣାପଡ଼ିବ । ସେତେବେଳେ ସେଠାରେ କାହାର ହେଲ୍ପ(ସାହାଯ୍ୟ) ନେବାକୁ ପଡ଼ିବ । ସେଥିପାଇଁ ଏହା ତୁମର ସ୍ୱତନ୍ତ୍ର ଶକ୍ତି ନୁହେଁ । ଏହା ତ' ଭ୍ରାନ୍ତିରେ ତୁମେ ପ୍ରକୃତିର ଶକ୍ତିକୁ ନିଜର ଶକ୍ତି ବୋଲି ମାନି ନେଇଛ । ପରସତ୍ତାକୁ ନିଜର ସତ୍ତା ବୋଲି ମାନନ୍ତି, ତାହାର ନାମ ଭ୍ରାନ୍ତି । ଏହି କଥା ଅଳ୍ପ ବହୁତ ବୁଝାପଡ଼ିଲା ତୁମକୁ ? ଦୁଇଅଣା ବା ଚାରିଅଣା, ଯେତିକି ବି ବୁଝାପଡ଼ିଲା ?

**ପ୍ରଶ୍ନକର୍ତ୍ତା :** ହଁ , ବୁଝାପଡୁଛି ।

**ଦାଦାଶ୍ରୀ :** ସେତିକି ବୁଝାପଡ଼ିଗଲେ ମଧ୍ୟ ସମାଧାନ ମିଳିଯାଏ । ଏ ଲୋକମାନେ ଯେଉଁ କୁହନ୍ତି ଯେ, 'ମୁଁ ଏତେ ତପ କଲି, ଏତେ ଜପ କଲି, ଉପବାସ କଲି' ଏ ସବୁ ଭ୍ରାନ୍ତି ଅଟେ । ତଥାପି ଜଗତ ତ ଏମିତି କୁ ଏମିତି ହିଁ ରହିବ । ଅହଂକାର କରିବା ବିନା ରହିବ ନାହିଁ । ସ୍ୱଭାବ ଅଟେ ନା ?

## କର୍ତ୍ତା, ନୈମିତ୍ତିକ କର୍ତ୍ତା...

**ପ୍ରଶ୍ନକର୍ତ୍ତା :** ଯଦି ବାସ୍ତବରେ ନିଜେ କର୍ତ୍ତା ନୁହେଁ, ତେବେ ପୁଣି କର୍ତ୍ତା କିଏ ? ଏବଂ ତା'ର ସ୍ୱରୂପ କ'ଣ ?

**ଦାଦାଶ୍ରୀ :** ନୈମିତ୍ତିକ କର୍ତ୍ତା ତ' ନିଜେ ହିଁ ଅଟେ । ନିଜେ ସ୍ୱତନ୍ତ୍ର କର୍ତ୍ତା ନୁହେଁ, ମାତ୍ର ନୈମିତ୍ତିକ କର୍ତ୍ତା ଅଟେ । ଅର୍ଥାତ ପାର୍ଲାମେଣ୍ଟ୍ରି ପଦ୍ଧତି ଅନୁସାରେ କର୍ତ୍ତା ଅଟେ । ପାର୍ଲାମେଣ୍ଟ୍ରି ପଦ୍ଧତି ମାନେ ? ଯେପରି ପାର୍ଲାମେଣ୍ଟରେ ସମସ୍ତଙ୍କର ଭୋଟିଂ ହୁଏ ଏବଂ ଶେଷରେ ନିଜର ଭୋଟ ହୁଏ, ସେହି ଆଧାରରେ  କୁହେ ଯେ ଏହା ତ'

ମୋତେ କରିବାକୁ ପଡ଼ିବ । ସେହି ହିସାବରେ କର୍ତ୍ତା ହୁଏ, ଏହିପରି ଯୋଜନାର ସର୍ଜନ ହୁଏ । ଯୋଜନା କରିବାବାଲା ନିଜେ ହିଁ ଅଟେ । କର୍ତ୍ତାପଣ କେବଳ ଯୋଜନାରେ ହିଁ ଥାଏ । ଯୋଜନାରେ ତା'ର ଦସ୍ତଖତ ଥାଏ । କିନ୍ତୁ ଜଗତ ଏହା ଜାଣେ ନାହିଁ । ତାହା ଛୋଟ କମ୍ପ୍ୟୁଟର ପରି ଅଟେ । ଯେପରି ଛୋଟ କମ୍ପ୍ୟୁଟର(ଚନ୍ଦୁଲାଲ୍)ରେ ଫିଡ୍ ହୋଇଥିବା ଡାଟା ବାହାରେ ଏବଂ ବଡ଼ କମ୍ପ୍ୟୁଟର(ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍‌ସିୟଲ୍ ଏଭିଡେନ୍ସ)ରେ ଫିଡ୍ ହୋଇଯାଏ, ସେହିପରି ଏହି ଯୋଜନା ସର୍ଜନ ହୋଇ ବଡ଼ କମ୍ପ୍ୟୁଟରକୁ ଯାଏ । ବଡ଼ କମ୍ପ୍ୟୁଟର ପୁଣି ତାହାର ବିସର୍ଜନ କରେ । ଅର୍ଥାତ ଏହି ଜନ୍ମର ପୁରା ଲାଇଫ୍ ବିସର୍ଜନ ସ୍ୱରୂପ ଅଟେ, ଯାହାର ସର୍ଜନ ପୂର୍ବଜନ୍ମରେ କରା ଯାଇଥାଏ । ଏଣୁ ଏହି ଜନ୍ମରେ ଜନ୍ମରୁ ନେଇ ମୃତ୍ୟୁ ପର୍ଯ୍ୟନ୍ତ ବିସର୍ଜନ ସ୍ୱରୂପ ହିଁ ଅଟେ । ନିଜ ହାତରେ କିଛି ମଧ ନାହିଁ, ସବୁ ପରସତ୍ତାରେ ଅଛି । ଥରେ ଯୋଜନା ହୋଇଗଲା, ତେବେ ସବୁ ପରସତ୍ତାକୁ ଚାଲିଯାଏ । ପରିଣାମରେ ପରସତ୍ତାର ହିଁ ରାଜୁତି ଚାଲେ ।ଅର୍ଥାତ୍ ପରିଣାମ ଅଲଗା ଅଟେ । ପରିଣାମ ପରସତ୍ତାର ଅଧିନ ଅଟେ । ତୁମକୁ ବୁଝାପଡୁଛି ? ଏହି କଥା ବହୁତ ଗହନ ଅଟେ ।

## କର୍ତ୍ତାପଦରୁ କର୍ମ ବନ୍ଧନ

**ପ୍ରଶ୍ନକର୍ତ୍ତା :** ଏ କର୍ମର ବନ୍ଧନରୁ ମୁକ୍ତ ହେବା ପାଇଁ କ'ଣ କରିବୁ ?

**ଦାଦାଶ୍ରୀ :** କର୍ମ, ତାହା କର୍ତ୍ତାର ଅଧିନ ଅଟେ । ଏଣୁ ଯଦି କର୍ତ୍ତା ହେବ ତେବେଯାଇ କର୍ମ ହେବ । କର୍ତ୍ତା ନହେବ, ତେବେ କର୍ମ ହେବ ନାହିଁ । କର୍ତ୍ତା କିପରି ? ଆରୋପିତ ଭାବରେ ଯାଇ ବସିଗଲେ, ସେଥିପାଇଁ କର୍ତ୍ତା ହେଲେ । ନିଜର ମୂଳ ସ୍ୱଭାବକୁ ଯଦି ଆସିଯିବା ତେବେ ନିଜେ କର୍ତ୍ତା ହିଁ ନୁହେଁ । 'ମୁଁ କଲି' ଏପରି କହିଲ ସେଥିପାଇଁ କର୍ତ୍ତା ହେଲ । ଅର୍ଥାତ୍ କର୍ମକୁ ଆଧାର ଦେଲ । ଏବେ ନିଜେ କର୍ତ୍ତା ନହେଲେ କର୍ମ ଖସିଯିବ, ନିରାଧାର କରିବା ଦ୍ୱାରା କର୍ମ ଖସିଯିବ । ଅର୍ଥାତ୍ ଯେପର୍ଯ୍ୟନ୍ତ କର୍ତ୍ତାପଣ ଅଛି ସେପର୍ଯ୍ୟନ୍ତ କର୍ମ ଅଛି ।

*'ଛୁଟେ ଦେହାଧାସ୍ ତୋ ନେହିଁ କର୍ତ୍ତା ତୁ କର୍ମ,*
*ନେହିଁ ଭୋକ୍ତା ତୁ ଉସକା, ୟହି ଧର୍ମ କା ମର୍ମ ।'*

-ଶ୍ରୀମଦ୍ ରାଜଚନ୍ଦ୍ର

ଏବେ 'ମୁଁ ଚନ୍ଦୁଲାଲ ଅଟେ' ଏପରି ତୁମେ ମାନିବସିଛ, ସେଥିପାଇଁ ସବୁ ଏକାକାର ହୋଇଯାଇଛି । ଭିତରେ ଦୁଇ ବସ୍ତୁ ଅଲଗା ଅଲଗା ଅଟେ । ତୁମେ ଅଲଗା ଏବଂ ଚନ୍ଦୁଲାଲ ଅଲଗା । କିନ୍ତୁ ଏହା ତୁମେ ଜାଣିନାହଁ, ସେପର୍ଯ୍ୟନ୍ତ କ'ଣ ହେବ ? ଜ୍ଞାନୀପୁରୁଷ ଭେଦ ବିଜ୍ଞାନ ଦ୍ୱାରା ଅଲଗା ଅଲଗା କରିଦେବେ, ପୁଣି ଯେବେ 'ତୁମେ' ('ଚନ୍ଦୁଲାଲ'ଠାରୁ) ଅଲଗା ହୋଇଯିବ, ସେତେବେଳେ 'ତୁମକୁ' କିଛି ବି କରିବାକୁ ରୁହେ ନାହିଁ, ସବୁ 'ଚନ୍ଦୁଲାଲ' କରନ୍ତି ।

# (୬) ଭେଦଜ୍ଞାନ କିଏ କରାନ୍ତି ?

## ଆତ୍ମା-ଅନାତ୍ମାର ବୈଜ୍ଞାନିକ ବିଭାଜନ

ଯେପରି ଏହି ମୁଦିରେ ସୁନା ଏବଂ ତମ୍ବା ଉଭୟ ମିଶି ରହିଛି, ଯଦି ତାହାକୁ ଆମେ ଗାଁ'କୁ ନେଇ କାହାକୁ କହିବା ଯେ, 'ଭାଇ, ଅଲଗା ଅଲଗା କରି ଦିଅନ୍ତୁ! ତେବେ କ'ଣ କେହି ବି କରିଦେବ ? କିଏ କରିପାରିବ ?

**ପ୍ରଶ୍ନକର୍ତ୍ତା :** ବଣିଆ ହିଁ କରି ପାରିବ ।

**ଦାଦାଶ୍ରୀ :** ଯାହାର ଏହି କାମ, ଯିଏ ଏଥିରେ ଏକ୍ସପର୍ଟ(ପାରଙ୍ଗମ), ସେ ସୁନା ଏବଂ ତମ୍ବା ଉଭୟକୁ ଅଲଗା କରିଦେବ । ୧୦୦ ରୁ ୧୦୦ ଭାଗ ସୁନା ଅଲଗା କରିଦେବ, କାରଣ ସେ ଦୁଇଟିର ଗୁଣଧର୍ମ ଜାଣିଛି ଯେ ସୁନାର ଗୁଣଧର୍ମ ଏପରି ଏବଂ ତମ୍ବାର ଗୁଣଧର୍ମ ଏପରି । ଠିକ୍ ସେହିପରି ଜ୍ଞାନୀପୁରୁଷ ଆତ୍ମାର ଗୁଣଧର୍ମ ଜାଣନ୍ତି ଏବଂ ଅନାତ୍ମାର ଗୁଣଧର୍ମ ମଧ୍ୟ ଜାଣନ୍ତି ।

ଏହି ମୁଦିରେ ସୁନା ଏବଂ ତମ୍ବା 'ମିକ୍ସଚର'(ମିଶ୍ରଣ) ହୋଇ ରହିଛି, ସେଥିପାଇଁ ଅଲଗା କରିହେବ, କିନ୍ତୁ ସୁନା ଏବଂ ତମ୍ବା ଉଭୟ କମ୍ପାଉଣ୍ଡ (ଯୌଗିକ) ସ୍ୱରୂପ ହୋଇ ଯାଇଥିଲେ, ଅଲଗା କରିହୋଇ ନଥାନ୍ତା । କାରଣ ଏହାଦ୍ୱାରା ଗୁଣଧର୍ମ ଅଲଗା ପ୍ରକାରର ହୋଇ ଯାଇଥାନ୍ତା । ସେହିପରି ଜୀବ ମଧ୍ୟରେ ଚେତନ ଏବଂ ଅଚେତନର ମିକ୍ସଚର ଅଛି, ସେମାନେ କମ୍ପାଉଣ୍ଡ ସ୍ୱରୂପ ହୋଇ ନାହାନ୍ତି । ସେଥିପାଇଁ ପୁଣି, ନିଜର ସ୍ୱଭାବ ପ୍ରାପ୍ତ କରିହେବ । କମ୍ପାଉଣ୍ଡ ହୋଇ ଯାଇଥିଲେ ଜଣା ପଡ଼ି ନଥାନ୍ତା । ଚେତନର ଗୁଣଧର୍ମ ବି ଜଣା ପଡ଼ି ନଥାନ୍ତା ଏବଂ ଅଚେତନର ଗୁଣଧର୍ମ ବି

ଜଣା ପଡ଼ି ନଥାନ୍ତା, ଏବଂ ଅନ୍ୟ ଏକ ତୃତୀୟ ଗୁଣଧର୍ମ ଉତ୍ପନ୍ନ ହୋଇଯାଇଥାନ୍ତା । କିନ୍ତୁ ଏପରି ନୁହେଁ । ତାହା ତ କେବଳ 'ମିକ୍ସଚର' ହୋଇଛି । ସେଥିପାଇଁ ଜ୍ଞାନୀପୁରୁଷ ଏମାନଙ୍କୁ ଅଲଗା କରିଦେଲେ ଆତ୍ମାର ପରିଚୟ ହୋଇଯାଏ ।

## ଜ୍ଞାନବିଧି କ'ଣ ?

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ଜ୍ଞାନବିଧି କ'ଣ ?

**ଦାଦାଶ୍ରୀ :** ଜ୍ଞାନବିଧି ତ ସେପାରେସନ(ଅଲଗା) କରେ, ପୁଦ୍‌ଗଲ୍ (ଅନାତ୍ମା) ଏବଂ ଆତ୍ମାର ! ଶୁଦ୍ଧ ଚେତନ ଏବଂ ପୁଦ୍‌ଗଲ୍ ଦୁହିଁଙ୍କର ସେପାରେସନ୍ ।

**ପ୍ରଶ୍ନକର୍ତ୍ତା :** ଏହି ସିଦ୍ଧାନ୍ତ ତ ଠିକ୍ କିନ୍ତୁ ତାହାର ପଦ୍ଧତି କ'ଣ ?

**ଦାଦାଶ୍ରୀ :** ଏଥିରେ ନେବା-ଦେବା ପରି କିଛି ହୋଇ ନଥାଏ, କେବଳ ଏଠାରେ ବସି ଯେପରି କୁହାଯିବ ସେହିପରି କହିବାକୁ ହେବ ('ମୁଁ କିଏ' ତାହାର ପରିଚୟ, ଜ୍ଞାନ ପ୍ରାପ୍ତି ପାଇଁ, ଦୁଇ ଘଣ୍ଟାର ଜ୍ଞାନପ୍ରୟୋଗ ହୁଏ । ସେଥିରୁ ଅଠଚାଳିଶ ମିନିଟ୍ ଆତ୍ମା-ଅନାତ୍ମାର ଭେଦ କରୁଥିବା ଭେଦବିଜ୍ଞାନର ବାକ୍ୟ ଉଚ୍ଚାରଣ କରାଯାଇଥାଏ । ଯାହା ସମସ୍ତଙ୍କୁ କହିବାକୁ ହୁଏ । ତା'ପରେ ଗୋଟିଏ ଘଣ୍ଟାରେ ପାଞ୍ଚ ଆଜ୍ଞା ଉଦାହରଣ ସହିତ ବିସ୍ତାରପୂର୍ବକ ବୁଝାଯାଏ, ଯେ ଏବେ ଅବଶିଷ୍ଟ ଜୀବନ କିପରି ଅତିବାହିତ କରିବ ଯାଦ୍ୱାରା ନୂଆ କର୍ମ ବନ୍ଧା ହେବ ନାହିଁ ଏବଂ ପୁରୁଣା କର୍ମ ପୂର୍ଣ୍ଣରୂପେ ଖତମ ହୋଇଯିବ, ସାଥେ ସାଥେ 'ମୁଁ ଶୁଦ୍ଧାତ୍ମା ଅଟେ'ର ଲକ୍ଷ୍ୟ ସର୍ବଦା ରହିବ !)

## ଆବଶ୍ୟକତା ଗୁରୁଙ୍କର ନା ଜ୍ଞାନୀଙ୍କର ?

**ପ୍ରଶ୍ନକର୍ତ୍ତା :** ଦାଦାଜୀଙ୍କୁ ଭେଟିବା ପୂର୍ବରୁ ଯଦି ଆଉ କାହାକୁ ଗୁରୁ ମାନିଥିବୁ ତେବେ ? ତେବେ ତାଙ୍କର କ'ଣ କରିବୁ ?

**ଦାଦାଶ୍ରୀ :** ତାଙ୍କ ନିକଟକୁ ଯିବ, ଆଉ ଯଦି ନଯିବାକୁ ଚାହୁଁଛ, ତେବେ ଯିବାର ଆବଶ୍ୟକତା ବି ନାହିଁ । ତୁମେ ଯିବାକୁ ଚାହୁଁଛ ତେବେ ଯାଅ ଏବଂ ଯିବାର ନାହିଁ ତେବେ ନ ଯାଅ । ତାଙ୍କୁ ଦୁଃଖ ନ ହେଉ, ସେଥିପାଇଁ ଯିବା ଉଚିତ । ଆମକୁ ବିନୟ ରଖିବା ଉଚିତ୍ । ଏଠାରେ 'ଆତ୍ମଜ୍ଞାନ' ନେବା ସମୟରେ ଯଦି ମୋତେ କେହି

ପଚାରେ ଯେ, 'ଏବେ ମୁଁ ଗୁରୁଙ୍କୁ ଛାଡ଼ିଦେବି ?' ତେବେ ମୁଁ କୁହେ, 'ନା, ଛାଡ଼ ନାହିଁ । ଆରେ, ସେହି ଗୁରୁଙ୍କ ପ୍ରତାପରୁ ତ ଏ ପର୍ଯ୍ୟନ୍ତ ପହଞ୍ଚି ପାରିଛ ।' ଗୁରୁଙ୍କ କାରଣରୁ ମନୁଷ୍ୟ କିଛି ମର୍ଯ୍ୟାଦାରେ ରହି ପାରିଥାଏ । ଗୁରୁ ନଥିବେ ତେବେ ମର୍ଯ୍ୟାଦା ମଧ୍ୟ ରହିବ ନାହିଁ । ଏବଂ ଗୁରୁଙ୍କୁ କହିବା ଉଚିତ୍ ଯେ 'ମୋତେ ଜ୍ଞାନୀ ପୁରୁଷ ମିଳିଛନ୍ତି । ତାଙ୍କ ଦର୍ଶନ କରିବା ପାଇଁ ଯାଉଛି ।' କିଛି ଲୋକ ତ ନିଜ ଗୁରୁଙ୍କୁ ବି ମୋ ପାଖକୁ ନେଇ ଆସନ୍ତି, କାରଣ ଗୁରୁଙ୍କୁ ବି 'ମୋକ୍ଷ' ତ ଦରକାର ନା ! ସଂସାର ଜ୍ଞାନ ବି ଗୁରୁ ବିନା ହୁଏ ନାହିଁ ଏବଂ ମୋକ୍ଷର ଜ୍ଞାନ ବି ଗୁରୁ ବିନା ହୁଏ ନାହିଁ । ବ୍ୟବହାରର ଗୁରୁ 'ବ୍ୟବହାର' ପାଇଁ ଏବଂ ଜ୍ଞାନୀପୁରୁଷ 'ନିଶ୍ଚୟ' ପାଇଁ । ବ୍ୟବହାର ରିଲେଟିଭ(ସାପେକ୍ଷ) ଅଟେ ଏବଂ 'ନିଶ୍ଚୟ' ରିୟଲ୍(ବାସ୍ତବ) ଅଟେ । ରିଲେଟିଭ୍ ପାଇଁ ଗୁରୁ ଦରକାର ଏବଂ ରିୟଲ୍ ପାଇଁ ଜ୍ଞାନୀପୁରୁଷ ଦରକାର ।

# (୭) ମୋକ୍ଷର ସ୍ୱରୂପ କ'ଣ ?

## କେବଳ ଏହି ଧ୍ୟେୟ ହେବା ଉଚିତ୍

**ପ୍ରଶ୍ନକର୍ତ୍ତା :** ମନୁଷ୍ୟର ଧ୍ୟେୟ କ'ଣ ହେବା ଉଚିତ୍ ?

**ଦାଦାଶ୍ରୀ :** ମୋକ୍ଷରେ ହିଁ ଯିବାର ଅଛି ! ଏହି ଧ୍ୟେୟ ହେବା ଉଚିତ୍ । ତୁମକୁ ବି ମୋକ୍ଷରେ ଯିବାର ଅଛି ନା ? କେବେ ପର୍ଯ୍ୟନ୍ତ ଭଟକିବ ? ଅନନ୍ତ ଜନ୍ମରୁ ଭଟକି-ଭଟକି... ଭଟକିବାରେ ଆଉ କିଛି ବାକି ହିଁ ରଖି ନାହଁ ନା ! ତିର୍ୟଚ(ପଶୁ) ଗତିରେ, ମନୁଷ୍ୟଗତିରେ, ଦେବଗତିରେ, ସବୁଜାଗା ଭଟକି ଚାଲିଛ । କ'ଣ ପାଇଁ ଭଟକିବାକୁ ପଡ଼ିଲା ? କାରଣ 'ମୁଁ କିଏ' ଏତିକି ହିଁ ଜାଣିଲ ନାହିଁ । ନିଜ ସ୍ୱରୂପକୁ ହିଁ ଚିହ୍ନିଲ ନାହିଁ । ନିଜର ସ୍ୱରୂପକୁ ଚିହ୍ନିବା ଉଚିତ୍ । 'ନିଜେ କିଏ' ତାହା ଜାଣିବା ଉଚିତ୍ ନୁହେଁ ? ଏତେ ବୁଲିଲ ତଥାପି ଜାଣି ପାରିଲ ନାହିଁ ତୁମେ ? କେବଳ ପଇସା ପଛରେ ପଡ଼ିଛ ? ମୋକ୍ଷ ପାଇଁ ମଧ୍ୟ ଅଳ୍ପ ବହୁତ କିଛି କରିବା ଉଚିତ ନା ନୁହେଁ ?

**ପ୍ରଶ୍ନକର୍ତ୍ତା :** କରିବା ଉଚିତ୍ ।

**ଦାଦାଶ୍ରୀ :** ଅର୍ଥାତ୍ ସ୍ୱତନ୍ତ୍ର ହେବାର ଆବଶ୍ୟକତା ଅଛି ନା ? ଏପରି ପରାଧିନ କେବେ ପର୍ଯ୍ୟନ୍ତ ରହିବ ?

**ପ୍ରଶ୍ନକର୍ତ୍ତା :** ସ୍ୱତନ୍ତ୍ର ହେବାର ଆବଶ୍ୟକତା ନାହିଁ ମାତ୍ର ସ୍ୱତନ୍ତ୍ର ହେବା ପାଇଁ ଯେଉଁ ସମଝ୍(ଜ୍ଞାନ) ଦରକାର ସେହି ସମଝ୍‌ର ଆବଶ୍ୟକତା ଅଛି, ଏପରି ମୋର ମାନ୍ୟତା ଅଟେ ।

**ଦାଦାଶ୍ରୀ :** ହଁ, ସେହି ସମଝ୍‌ର ହିଁ ଆବଶ୍ୟକତା ଅଛି । ସେହି ସମଝ୍‌କୁ ଯଦି ଆମେ ଜାଣିନେବା ତେବେ ବହୁତ ହୋଇଗଲା, ଯଦିବା ସ୍ୱତନ୍ତ୍ର ନ ହୋଇ ପାରନ୍ତି । ସ୍ୱତନ୍ତ୍ର ହେଲେ କି ନାହିଁ ତାହା ତା'ପର କଥା, କିନ୍ତୁ ସେହି ସମଝ୍‌ର ଆବଶ୍ୟକତା ତ ଅଛି ନା ? ପ୍ରଥମେ ସମଝ୍ ପ୍ରାପ୍ତ ହୋଇଗଲା, ତେବେ ବହୁତ ହୋଇଗଲା ।

## 'ସ୍ୱଭାବ'କୁ ଆସିବାରେ ପରିଶ୍ରମ ନାହିଁ

ମୋକ୍ଷ ଅର୍ଥାତ୍ ନିଜର ସ୍ୱଭାବକୁ ଆସିବା ଏବଂ ସଂସାର ଅର୍ଥାତ ନିଜର ବିଶେଷ ଭାବକୁ ଯିବା । ତେବେ ସହଜ କୋଉଟା ? ସ୍ୱଭାବରେ ରହିବା ! ଅର୍ଥାତ୍ ମୋକ୍ଷ କଠିନ ନୁହେଁ । ସଂସାର ସର୍ବଦା କଠିନ ରହିଆସିଛି । ମୋକ୍ଷ ତ' ଖେଚୁଡ଼ି ବନାଇବା ଠାରୁ ମଧ୍ୟ ସହଜ ଅଟେ । ଖେଚୁଡ଼ି ବନାଇବା ପାଇଁ ତ' କାଠ ଆଣିବାକୁ ପଡ଼େ, ଡାଲି-ଚାଉଳ ଆଣିବାକୁ ପଡ଼େ, କଡ଼େଇ ଆଣିବାକୁ ପଡ଼େ, ପାଣି ଆଣିବାକୁ ପଡ଼େ, ତେବେଯାଇ ଖେଚୁଡ଼ି ହୁଏ । ଯେବେକି ମୋକ୍ଷ ତ' ଖେଚୁଡ଼ିଠାରୁ ମଧ୍ୟ ସହଜ ଅଟେ କିନ୍ତୁ ମୋକ୍ଷଦାତା ଜ୍ଞାନୀ ମିଳିବା ଦରକାର । ନଚେତ୍ ମୋକ୍ଷ କେବେବି ହୋଇ ପାରିବ ନାହିଁ । କୋଟି ଜନ୍ମ ନେଲେ ମଧ୍ୟ ହେବ ନାହିଁ । ଅନନ୍ତ ଜନ୍ମ ତ ହୋଇ ସାରିଲାଣି ନା ?

## ପରିଶ୍ରମ ଦ୍ୱାରା ମିଳେ ନାହିଁ ମୋକ୍ଷ

ଏ ଯେଉଁ ମୁଁ କୁହେ ନା, ଯେ ମୋ ନିକଟକୁ ଆସି ମୋକ୍ଷ ନେଇଯାଅ, ସେତେବେଳେ ଲୋକମାନେ ମନରେ ଭାବନ୍ତି ଯେ 'ଏପରି ଦିଆ ଯାଉଥିବା ମୋକ୍ଷ କେଉଁ କାମକୁ, ନିଜ ପରିଶ୍ରମ ବିନା ?' 'ତେବେ ଭାଇ, ପରିଶ୍ରମ କରିକି ଆଣିବ । ଦେଖନ୍ତୁ, ତା'ର ସମଝ୍(ଚିନ୍ତାଧାରା) କେତେ ଉଚ୍ଚ( ! ) ?' ବାକି, ପରିଶ୍ରମ ଦ୍ୱାରା କିଛି ମଧ୍ୟ ମିଳିବାର ନାହିଁ । ପରିଶ୍ରମ ଦ୍ୱାରା କେବେ କାହାକୁ ମୋକ୍ଷ ମିଳି ନାହିଁ ।

**ପ୍ରଶ୍ନକର୍ତ୍ତା :** ମୋକ୍ଷ ଦିଆ ବା ନିଆଯାଇ ପାରିବ କି ?

**ଦାଦାଶ୍ରୀ :** ତାହା ନେବା-ଦେବାର ହୋଇ ନଥାଏ । ଏହା ତ ନୈମିତ୍ତିକ ଅଟେ । ତୁମେ ମୋତେ ଭେଟିଲ, ଏହା ନିମିତ୍ତ ଅଟେ । ନିମିତ୍ତ ଜରୁରୀ ଅଟେ । ବାକି, ନା ତ କେହି ଦେବାବାଲା ଆଉ ନା କେହି ନେବାବାଲା । ଦେବାବାଲା କାହାକୁ କୁହନ୍ତି ? କେହି ଯଦି ନିଜ ବସ୍ତୁ ଦିଏ, ତେବେ ତା'କୁ ଦେବାବାଲା କୁହନ୍ତି । କିନ୍ତୁ ମୋକ୍ଷ ତ ତୁମ ଘରେ ହିଁ ଅଛି, ମୋତେ ତ କେବଳ ତୁମକୁ ଦେଖାଇବାର ଅଛି, ରିୟଲାଇଜ୍ କରାଇ ଦେବାର ଅଛି । ଅର୍ଥାତ୍ ନେବା-ଦେବାର ହୋଇନଥାଏ, ମୁଁ ତ କେବଳ ନିମିତ୍ତ ଅଟେ ।

## ମୋକ୍ଷ ଅର୍ଥାତ୍ ସନାତନ ସୁଖ

**ପ୍ରଶ୍ନକର୍ତ୍ତା :** ମୋକ୍ଷପ୍ରାପ୍ତି କରି କ'ଣ କରିବୁ ?

**ଦାଦାଶ୍ରୀ :** କିଛି ଲୋକ ମୋତେ ଭେଟିଲେ କୁହନ୍ତି ଯେ ମୋତେ ମୋକ୍ଷ ଦରକାର ନାହିଁ । ତେବେ ମୁଁ କୁହେ ଯେ, 'ଭାଇ, ତୁମକୁ ମୋକ୍ଷର ଆବଶ୍ୟକତା ନାହିଁ କିନ୍ତୁ ସୁଖ ତ ଦରକାର ନା ନାହିଁ ? ନା ଦୁଃଖ ପସନ୍ଦ ?' ତେବେ କୁହନ୍ତି, 'ନା, ସୁଖ ତ ଚାହୁଁଛି ।' ମୁଁ କହିଲି, 'ସୁଖ ଅଳ୍ପ-ବହୁତ କମ୍ ହେଲେ ଚଳିବ ?' ତେବେ ସେ କୁହେ 'ନା, ସୁଖ ତ ପୁରା ହିଁ ଦରକାର ।' ମୁଁ କହିଲି, 'ତା'ହେଲେ ଆମେ ସୁଖ ବିଷୟରେ ହିଁ ଆଲୋଚନା କରିବା ! ମୋକ୍ଷ କଥା ଛାଡ଼ି ଦିଅ ।' ମୋକ୍ଷ କି ଜିନିଷ ଅଟେ, ଏହି ଲୋକମାନେ ବୁଝନ୍ତି ହିଁ ନାହିଁ । ଶବ୍ଦରେ କୁହନ୍ତି, କେବଳ ସେତିକି । ଲୋକେ ଏପରି ବୁଝନ୍ତି ଯେ ମୋକ୍ଷ ନାମରେ କୌଣସି ଜାଗା ଅଛି ଏବଂ ସେଠାକୁ ଯିବା ଦ୍ୱାରା ଆମକୁ ମୋକ୍ଷର ମଜା ଆସିବ ! କିନ୍ତୁ ଏହା ଏପରି ନୁହେଁ ।

## ମୋକ୍ଷ, ଦୁଇଟି ଷ୍ଟେଜ୍‌ରେ

**ପ୍ରଶ୍ନକର୍ତ୍ତା :** ମୋକ୍ଷର ଅର୍ଥ, ଆମେ ସାଧାରଣତଃ ଜନ୍ମ-ମରଣରୁ ମୁକ୍ତି ହିଁ ବୁଝିଥାଉ ।

**ଦାଦାଶ୍ରୀ :** ହଁ, ତାହା ଠିକ । କିନ୍ତୁ ତାହା ଅନ୍ତିମ ମୁକ୍ତି ଅଟେ, ସେକେଣ୍ଡାରୀ ଷ୍ଟେଜ୍ ଅଟେ । କିନ୍ତୁ ପ୍ରଥମ ଷ୍ଟେଜ୍‌ରେ, ପ୍ରଥମ ମୋକ୍ଷ ଅର୍ଥାତ୍ ସଂସାରୀ ଦୁଃଖର

ଅଭାବ ବର୍ତ୍ତେ(ଅନୁଭବରେ ଆସେ) । ସଂସାରର ଦୁଃଖରେ ବି ଦୁଃଖ ସ୍ପର୍ଶ କରେନାହିଁ, *ଉପାଧି*(ସାଂସାରିକ ଦୁଃଖ)ରେ ବି ସମାଧି ରୁହେ, ତାହା ପ୍ରଥମ ମୋକ୍ଷ । ଆଉ ପୁଣି ଯେବେ ଏ ଦେହର ଅବସାନ ହୁଏ ସେତେବେଳେ ଆତ୍ୟନ୍ତିକ ମୋକ୍ଷ ହୁଏ । କିନ୍ତୁ ପ୍ରଥମ ମୋକ୍ଷ ଏହିଠାରେ ହେବା ଉଚିତ । ମୋର ମୋକ୍ଷ ହୋଇ ସାରିଛି ନା ! ସଂସାରରେ ରହିବା ସତ୍ତ୍ୱେ ମଧ୍ୟ ସଂସାର ଛୁଏଁ ନାହିଁ, ଏପରି ମୋକ୍ଷ ହୋଇଯିବା ଦରକାର । ତାହା ଏହି ଅକ୍ରମ ବିଜ୍ଞାନ ଦ୍ୱାରା ହୋଇପାରିବ ।

## ବଞ୍ଚି ଥାଉଥାଉ ମୁକ୍ତି

**ପ୍ରଶ୍ନକର୍ତ୍ତା :** ଏ ଯେଉଁ ମୁକ୍ତି ବା ମୋକ୍ଷ, ତାହା ବଞ୍ଚିଥିବା ବେଳେ ମୁକ୍ତି ନା ମରିବା ପରର ମୁକ୍ତି ?

**ଦାଦାଶ୍ରୀ :** ମରିବା ପରର ମୁକ୍ତି କେଉଁ କାମକୁ ? ମରିବା ପରେ ମୁକ୍ତି ହେବ, ଏପରି କହି ଲୋକମାନଙ୍କୁ ଫସାଉଛନ୍ତି । ଆରେ, ମୋତେ ଏଇଠି କିଛି ଦେଖା ନା ! କିଛିହେଲେ ତ' ସ୍ୱାଦ ଚଖା, କିଛି ପ୍ରମାଣ ତ ଦେଖା । ସେଠି ମୋକ୍ଷ ହେବ, ତାହାର କି ଠିକଣା ? ଏପରି ଉଧାରିଆ ମୋକ୍ଷ ଆମେ କ'ଣ କରିବୁ ? ଉଧାରରେ ମଜା ନଥାଏ । ସେଥିପାଇଁ କ୍ୟାସ୍(ନଗଦ) ହିଁ ଭଲ । ଆମର ଏଠି ବଞ୍ଚିଥିଲା ବେଳେ ମୁକ୍ତି ହେବା ଦରକାର, ଯେପରି ଜନକ ରାଜାଙ୍କର ମୁକ୍ତି ତୁମେ ଶୁଣି ନାହଁ ?

**ପ୍ରଶ୍ନକର୍ତ୍ତା :** ଶୁଣିଛି ।

# (୮) ଅକ୍ରମ ମାର୍ଗ କ'ଣ ?

## ଅକ୍ରମ ଜ୍ଞାନ ଦ୍ୱାରା ଅସାଧାରଣ ସିଦ୍ଧି

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏହି ସଂସାରରେ ରହି ଆତ୍ମଜ୍ଞାନ ଏପରି ମିଳିପାରିବ ?

**ଦାଦାଶ୍ରୀ :** ହଁ, ଏପରି ରାସ୍ତା ଅଛି । କେବଳ ସଂସାରରେ ରହି ଏତିକି ନୁହେଁ, କିନ୍ତୁ ୱାଇଫ(ପତ୍ନୀ) ସହ ରହି ମଧ୍ୟ ଆତ୍ମଜ୍ଞାନ ମିଳି ପାରିବ, ଏପରି ଅଟେ । ପୁଅ-ଝିଅଙ୍କ ବିବାହ କରାଇ, ସମସ୍ତ କାର୍ଯ୍ୟ କରିବା ସହ ମଧ୍ୟ ଆତ୍ମଜ୍ଞାନ ହୋଇ ପାରିବ । ମୁଁ ସଂସାରରେ ରହିବା ସହ ତୁମକୁ ଏହା କରାଇ ଦେବି । ସଂସାରରେ,

ଅର୍ଥାତ୍ ସିନେମା ଦେଖିବାକୁ ଯିବା ଇତ୍ୟାଦି ତୁମକୁ ସବୁ ଛାଡ଼ ଦେଉଛି । ପୁଅ-ଝିଅଙ୍କୁ ବାହା କରାଇବ ଏବଂ ଭଲ ଲୁଗା ପିନ୍ଧାଇ ବାହା କରାଇବ । ପୁଣି ଏହାଠାରୁ ଅଧିକ ଆଉ କ'ଣ ଗ୍ୟାରେଣ୍ଟି ଚାହୁଁଛ ?

**ପ୍ରଶ୍ନକର୍ତ୍ତା :** ଏତେ ସବୁ ଛାଡ଼ ମିଳିବ, ତେବେ ତ ନିଶ୍ଚିତ ଆତ୍ମାରେ ରହିହେବ ।

**ଦାଦାଶ୍ରୀ :** ସବୁ ଛାଡ଼ ! ଏହା ଅପବାଦ ମାର୍ଗ ଅଟେ । ତୁମକୁ କିଛି ପରିଶ୍ରମ କରିବାର ନାହିଁ । ତୁମକୁ ଆତ୍ମା ମଧ୍ଯ ତୁମ ହାତରେ ଦେଇ ଦେବି, ତା'ପରେ ଆତ୍ମାର ରମଣତାରେ ରୁହ ଏବଂ ଏହି ଲିଫ୍ଟରେ ବସିରୁହ । ତୁମକୁ ଆଉ କିଛି ବି କରିବାର ନାହିଁ । ପୁଣି ତୁମକୁ କର୍ମ ବନ୍ଧନ ହିଁ ହେବ ନାହିଁ । ଗୋଟିଏ ହିଁ ଜନ୍ମର କର୍ମ ବନ୍ଧନ ହେବ, ତାହା ବି କେବଳ ମୋ ଆଜ୍ଞା ପାଳନର । ମୋ ଆଜ୍ଞାରେ ରହିବା ଏଥିପାଇଁ ଆବଶ୍ୟକ ଅଟେ ଯେ, ଲିଫ୍ଟରେ ବସିବା ସମୟରେ ଯଦି ହାତ ଏପଟ-ସେପଟ କରିବା, ତେବେ ଅସୁବିଧାରେ ପଡ଼ିଯିବା ନା !

**ପ୍ରଶ୍ନକର୍ତ୍ତା :** ଅର୍ଥାତ୍ ପରଜନ୍ମ ହେବ ନିଶ୍ଚୟ ?

**ଦାଦାଶ୍ରୀ :** ପୂର୍ବଜନ୍ମ ବି ଥିଲା ଏବଂ ଏବେ ପରଜନ୍ମ ବି ଅଛି କିନ୍ତୁ ଏହି ଜ୍ଞାନ ଏପରି  ଅଟେ ଯେ ଏବେ କେବଳ ଗୋଟିଏ କିମ୍ବା ଦୁଇଟି ଜନ୍ମ ହିଁ ବାକି ରୁହେ । ପ୍ରଥମେ ଅଜ୍ଞାନରୁ ମୁକ୍ତି ହୋଇଯାଏ । ପୁଣି ଗୋଟିଏ-ଦୁଇଟି ଜନ୍ମରେ ଅନ୍ତିମ ମୁକ୍ତି ମିଳିଯିବ । ଗୋଟିଏ ଜନ୍ମ ତ ବାକି ରହିବ, ଏହି କାଳ ଏପରି ଅଟେ ।

ତୁମେ ଦିନେ ମୋ ପାଖକୁ ଆସ । ଆମେ ଗୋଟିଏ ଦିନ ସ୍ଥିର କରିବୁ, ସେହିଦିନ ତୁମକୁ ଆସିବାକୁ ହେବ । ସେହିଦିନ ସମସ୍ତଙ୍କର ଦଉଡ଼ି ପଛପଟୁ କାଟି ଦିଏ(ସ୍ୱରୂପର ଅଜ୍ଞାନ ରୂପୀ ଦଉଡ଼ିର ବନ୍ଧନ ଦୂର କରେ) । ସବୁଦିନ କାଟେ ନାହିଁ । ସବୁଦିନ ତ ସତ୍‌ସଙ୍ଗର ସମସ୍ତ ବିଷୟ ଆଲୋଚନା ହୁଏ, କିନ୍ତୁ ଗୋଟିଏ ଦିନ ସ୍ଥିର କରାଯାଏ, ସେହି ଦିନ ବ୍ଲେଡ୍ ଦ୍ୱାରା ଏପରି ଦଉଡ଼ି କାଟି ଦିଏ (ଜ୍ଞାନବିଧି ଦ୍ୱାରା ସ୍ୱରୂପଜ୍ଞାନ ପ୍ରାପ୍ତି କରାଏ) ଆଉ କିଛି ନୁହେଁ । ପରେ ତୁମେ ତୁରନ୍ତ ବୁଝିଯିବ ଯେ ଏ ସବୁ ଖୋଲିଗଲା । ଏହି ଅନୁଭବ ହେବା ପରେ ତୁରନ୍ତ କହିବ ଯେ ମୁକ୍ତ ହୋଇଗଲି । ଅର୍ଥାତ୍ ମୁକ୍ତ ହେଲି, ଏପରି ଭାନ୍ ହେବା (ଜଣା ପଡ଼ିବା) ଦରକାର । ମୁକ୍ତ ହେବା,

ଏହା କୌଣସି ଗପ୍ପ ନୁହେଁ । ଅର୍ଥାତ୍ ମୁଁ ତୁମକୁ ମୁକ୍ତ କରାଇ ଦିଏ ।

ଯେଉଁ ଦିନ ଏହି 'ଜ୍ଞାନ' ଦିଏ, ସେ ଦିନ କ'ଣ ହୁଏ ? ତା'ର ଯେଉଁ କର୍ମ ଥାଏ, ସେସବୁ ଜ୍ଞାନାଗ୍ନୀରେ ଭସ୍ମୀଭୂତ ହୋଇଯାଏ । ଦୁଇ ପ୍ରକାରର କର୍ମ ଭସ୍ମୀଭୂତ ହୋଇଯାଏ ଏବଂ ଗୋଟିଏ ପ୍ରକାର କର୍ମ ବାକି ରହିଯାଏ । ଯେଉଁ କର୍ମ ବାଷ୍ପରୂପୀ ଅଟେ, ସେସବୁର ନାଶ ହୋଇଯାଏ ଆଉ ଯେଉଁ କର୍ମ ଜଳରୂପୀ ଅଟେ, ତାହା ମଧ୍ୟ ନାଶ ହୋଇଯାଏ କିନ୍ତୁ ଯେଉଁ କର୍ମ ବରଫରୂପୀ ଅଟେ, ତାହା ନାଶ ହୁଏ ନାହିଁ । ବରଫରୂପୀ ଯେଉଁ କର୍ମ ଥାଏ, ତାହାକୁ ଭୋଗିବାକୁ ହିଁ ପଡ଼ିଥାଏ । କାରଣ ତାହା ଜମାଟ ବାନ୍ଧି ସାରିଥାଏ । ଯେଉଁ କର୍ମ ଫଳଦେବା ପାଇଁ ପ୍ରସ୍ତୁତ ହୋଇ ସାରିଛି, ତାହା ପୁଣି ଛାଡ଼େ ନାହିଁ । କିନ୍ତୁ ଜଳ ଏବଂ ବାଷ୍ପ ସ୍ୱରୂପ ଯେଉଁ କର୍ମ ଥାଏ, ସେସବୁକୁ ଜ୍ଞାନାଗ୍ନୀ ଉଡ଼େଇ ଦିଏ । ସେଥିପାଇଁ ଜ୍ଞାନ ପାଇବା ମାତ୍ରେ ଲୋକମାନେ ଏକଦମ୍ ହାଲୁକା ହୋଇଯାଆନ୍ତି, ସେମାନଙ୍କ ଜାଗୃତି ଏକଦମ୍ ବଢ଼ିଯାଏ । କାରଣ ଯେପର୍ଯ୍ୟନ୍ତ କର୍ମ ଭସ୍ମୀଭୂତ ନ ହୁଏ, ସେପର୍ଯ୍ୟନ୍ତ ମନୁଷ୍ୟର ଜାଗୃତି ବଢ଼େ ହିଁ ନାହିଁ ! ବରଫରୂପୀ ଯେଉଁ କର୍ମ ଅଛି ତାହା ତ ଆମକୁ ଭୋଗିବାକୁ ହିଁ ପଡ଼ିବ । ଏବଂ ସେଗୁଡ଼ିକ କିପରି ସରଳତାର ସହିତ ଭୋଗିହେବ, ତାହାର ସମସ୍ତ ରାସ୍ତା ମୁଁ ବତାଇଛି ଯେ, "ଭାଇ, ଏ 'ଦାଦା ଭଗବାନ କେ ଅସୀମ ଜୟ ଜୟକାର ହୋ' ଗାଇବ, ତ୍ରିମନ୍ତ୍ର ଉଚ୍ଚାରଣ କରିବ, ନଅ କଲମ ପଢ଼ିବ ।"

ମୁଁ ଜ୍ଞାନ ଦିଏ, ତାହା ଦ୍ୱାରା କର୍ମ ଭସ୍ମୀଭୂତ ହୋଇଯାଏ ଏବଂ ସେହି ସମୟରେ ଅନେକ ଆବରଣ ନଷ୍ଟ ହୋଇଯାଏ । ସେତେବେଳେ ଭଗବାନଙ୍କ କୃପା ହେବା ସହିତ ସେ ନିଜେ ଜାଗୃତ ହୋଇଯାଏ । ସେହି ଜାଗୃତି ଆଉ ଯାଏ ନାହିଁ, ଜାଗ୍ରତ ହେବାପରେ ତାହା ଆଉ ଯାଏ ନାହିଁ । ନିରନ୍ତର ଜାଗୃତ ରହିପାରିବା । ଅର୍ଥାତ୍ ପ୍ରତୀତି ନିରନ୍ତର ରହିବ ହିଁ ରହିବ । ପ୍ରତୀତି କେତେବେଳେ ରହିପାରିବ ? ଜାଗୃତି ଥିବ, ତେବେ ପ୍ରତୀତି ରହିପାରିବ । ପ୍ରଥମେ ଜାଗୃତି, ତା'ପରେ ପ୍ରତୀତି । ପୁଣି ଅନୁଭବ, ଲକ୍ଷ୍ୟ ଏବଂ ପ୍ରତୀତି ଏ ତିନିହେଁ ରହିବେ । ପ୍ରତୀତି ସର୍ବଦା ରହିବ । ଲକ୍ଷ୍ୟ ତ' ବେଳେ ବେଳେ ରହିବ । କୌଣସି ଧନ୍ଦାରେ ବା କାମରେ ବ୍ୟସ୍ତ ରହିଗଲେ ଲକ୍ଷ୍ୟରେ ରୁହେ ନାହିଁ ଏବଂ କାମ ଶେଷ ହେବା ପରେ ପୁଣି ଲକ୍ଷ୍ୟରେ ଆସିଯାଏ । ଆଉ ଅନୁଭବ କେତେବେଳେ ହେବ, ନା ଯେତେବେଳେ କାମରୁ, ସବୁଥିରୁ ନିବୃତ୍ତ ହୋଇ,

ଏକାନ୍ତରେ ବସିଥିବା ସେତେବେଳେ ଅନୁଭବର ସ୍ୱାଦ ଆସିବ । ତଥାପି ଅନୁଭବ ତ ବଢ଼ି ଚାଲିଥାଏ, କାରଣ ପ୍ରଥମେ ଚନ୍ଦୁଲାଲ କ'ଣ ଥିଲେ ଏବଂ ଆଜି ଚନ୍ଦୁଲାଲ କ'ଣ ଅଟନ୍ତି, ତାହା ବୁଝିହେଉଛି । ତେବେ ଏହି  ପରିବର୍ତ୍ତନ କିପରି ? ଆତ୍ମ-ଅନୁଭବ ଦ୍ୱାରା । ପୂର୍ବରୁ ଦେହାଧ୍ୟାସର ଅନୁଭବ ଥିଲା ଏବଂ ଏବେ ଏହା ଆତ୍ମ-ଅନୁଭବ ଅଟେ ।

**ପ୍ରଶ୍ନକର୍ତ୍ତା :** ଆତ୍ମାର ଅନୁଭବ ହୋଇଯିବା ପରେ କ'ଣ ହୁଏ ।

**ଦାଦାଶ୍ରୀ :** ଆତ୍ମାର ଅନୁଭବ ହୋଇଗଲା, ଅର୍ଥାତ୍ ଦେହାଧ୍ୟାସ ଚାଲିଗଲା । ଦେହାଧ୍ୟାସ ଚାଲିଗଲା, ଅର୍ଥାତ୍ କର୍ମ ବନ୍ଧନ ଅଟକି ଗଲା । ପୁଣି ଆଉ କ'ଣ ଦରକାର ?

## ଆତ୍ମା-ଅନାତ୍ମା ମଧ୍ୟରେ ଭେଦରେଖା

ଏହା ଅକ୍ରମ ବିଜ୍ଞାନ ଅଟେ, ସେଥିପାଇଁ ଏତେ ଶୀଘ୍ର ସମକିତ ହୋଇଯାଏ । ନଚେତ୍ ଆଜି କ୍ରମିକ ମାର୍ଗରେ ସମକିତ ହୋଇପାରିବ ଏପରି ସମ୍ଭବ ହିଁ ନୁହେଁ । ଏହି ଅକ୍ରମ ବିଜ୍ଞାନ ତ ବହୁତ ଉଚ୍ଚକୋଟୀର ବିଜ୍ଞାନ ଅଟେ । ଆତ୍ମା ଏବଂ ଅନାତ୍ମା ମଧ୍ୟରେ ଅର୍ଥାତ୍ ତୁମର ଏବଂ ପର ଜିନିଷ, ଏହିପରି ଉଭୟର ବିଭାଜନ କରିଦିଏ । 'ଏହି' ଭାଗ ତୁମର ଏବଂ 'ଏହା' ତୁମର ନୁହେଁ, ଆଉ ମଝିରେ ଲାଇନ୍ ଅଫ୍ ଡିମାର୍କେସନ୍, ଭେଦରେଖା ଟାଣିଦିଏ ସେଠାରେ । ପରେ ପଡ଼ୋଶୀଙ୍କ କ୍ଷେତର ଭେଣ୍ଡି ଆମେ ଖାଇପାରିବା ନାହିଁ ନା ?

## ମାର୍ଗ : 'କ୍ରମ' ଏବଂ 'ଅକ୍ରମ'

ତୀର୍ଥଙ୍କରମାନଙ୍କର ଯେଉଁ ଜ୍ଞାନ ତାହା କ୍ରମିକ ଜ୍ଞାନ ଅଟେ । କ୍ରମିକ ଅର୍ଥାତ୍ ଶିଢ଼ି ପରେ ଶିଢ଼ି ଚଢ଼ିବା । ଯେତେ ପରିଗ୍ରହ କମ୍ କରି କରି ଯିବ, ସେତେ ମୋକ୍ଷର ନିକଟ ପହଞ୍ଚିବ, ତାହା ମଧ୍ୟ ଅନେକ କାଳ ପରେ । ଯେବେକି ଏହି ଅକ୍ରମ ବିଜ୍ଞାନ ମାନେ କ'ଣ ? ଶିଢ଼ି ଚଢ଼ିବାର ନାହିଁ, ଲିଫ୍ଟରେ ବସିଯାଅ ଏବଂ ବାର ମହଲାରେ ପହଞ୍ଚିଯାଅ, ଏପରି ଏହି ଲିଫ୍ଟ ମାର୍ଗ ବାହାରିଛି । ଯେଉଁମାନେ ଏହି ଲିଫ୍ଟରେ ବସିଗଲେ ସେମାନଙ୍କର କଲ୍ୟାଣ ହୋଇଗଲା । ମୁଁ ତ' ନିମିତ୍ତ ଅଟେ । ଯିଏ ଏହି ଲିଫ୍ଟରେ ବସିଗଲେ, ତାଙ୍କର ସମାଧାନ ଆସିଗଲା ନା' ! ସମାଧାନ ତ ଆଣିବାକୁ ପଡ଼ିବ ନା ? ଆମେ ମୋକ୍ଷରେ ହିଁ ଯାଉଛେ, ସେହି ଲିଫ୍ଟରେ ବସିଥିବାର ପ୍ରମାଣ ତ ଦରକାର

ନା ? ତାହାର ପ୍ରମାଣ ହେଉଛି କ୍ରୋଧ-ମାନ-ମାୟା-ଲୋଭ ନହେବା, ଆର୍ତ୍ତଧ୍ୟାନ-ରୌଦ୍ରଧ୍ୟାନ ନହେବା । ଅର୍ଥାତ୍ ପୁରା କାମ ହୋଇଗଲା ନା ?

## ଯିଏ 'ମୋତେ' ଭେଟିଲା ସେ ଯୋଗ୍ୟ

**ପ୍ରଶ୍ନକର୍ତ୍ତା :** ଏହି ମାର୍ଗ ଏତେ ସରଳ ଅଟେ, ତେବେ ଅଧିକାର(ଯୋଗ୍ୟତା) ଭଳି କିଛି ଦେଖିବାର ନାହିଁ ? ସମସ୍ତଙ୍କ ପାଇଁ କ'ଣ ଏହା ସମ୍ଭବ ?

**ଦାଦାଶ୍ରୀ :** ଲୋକେ ମୋତେ ପଚାରନ୍ତି ଯେ, 'ଏଥିପାଇଁ ମୁଁ ଯୋଗ୍ୟ କି ?' ସେତେବେଳେ ମୁଁ କୁହେ, 'ମୋତେ ଭେଟିଲୁ, ସେଥିପାଇଁ ତୁ ଯୋଗ୍ୟ ।' ଏହି ଭେଟହେବା, ଏହା ପଛରେ ସାଇଣ୍ଟିଫିକ୍ ସରକମ୍‌ଷ୍ଟେନ୍ସିୟଲ ଏଭିଡେନ୍ସ ଅଛି । ସେଥିପାଇଁ ଯେଉଁମାନେ ମୋତେ ଭେଟିଲେ, ସେମାନଙ୍କୁ ଯୋଗ୍ୟ ବୋଲି ବୁଝାଯିବ । ଯିଏ ଭେଟି ନାହିଁ ସେ ଯୋଗ୍ୟ ନୁହେଁ । ସେ କେଉଁ ଆଧାରରେ ମୋତେ ଭେଟେ ? ସେ ଯୋଗ୍ୟ ଅଟେ, ସେଥିପାଇଁ ତ ମୋ ସହ ଭେଟ ହୁଏ । ମୋତେ ଭେଟିବା ପରେ ମଧ୍ୟ ଯଦି ତା'କୁ ଜ୍ଞାନ ପ୍ରାପ୍ତି ନହୁଏ, ତେବେ ତା'ର ଅନ୍ତରାୟ କର୍ମ ବାଧକ ଅଟେ ।

## କ୍ରମରେ 'କରିବାକୁ ପଡ଼େ' ଏବଂ ଅକ୍ରମରେ...

ଜଣେ ଭାଇ ଥରେ ପ୍ରଶ୍ନ କଲେ ଯେ କ୍ରମ ଏବଂ ଅକ୍ରମ ମଧ୍ୟରେ ତଫାତ କ'ଣ ? ମୁଁ ତାଙ୍କୁ କହିଲି, କ୍ରମ ଅର୍ଥାତ୍ ଯେପରି ସମସ୍ତେ କୁହନ୍ତି ଯେ ଓଲଟା(ଭୁଲ) ଛାଡ଼ ଏବଂ ସିଧା(ଠିକ୍) କର । ସମସ୍ତେ ଏହା ହିଁ କହୁଥିବେ ବାରମ୍ବାର, ତାହାର ନାମ କ୍ରମିକ ମାର୍ଗ । କ୍ରମ ଅର୍ଥାତ୍ ସବୁକିଛି ଛାଡ଼ିବାକୁ କହିବେ, ଏହି କପଟ-ଲୋଭ ଛାଡ଼ ଏବଂ ଭଲ କର । ଏହା ହିଁ ତୁମେ ଦେଖି ଆସିଛ ନା ଆଜି ପର୍ଯ୍ୟନ୍ତ ? ଆଉ ଏହି ଅକ୍ରମ ଅର୍ଥାତ୍, କରିବାର ନାହିଁ । କରୋମି-କରୋସି-କରୋତି ନାହିଁ ! ପକେଟ୍‌ମାର ହେଲେ ଅକ୍ରମରେ କହିବେ, 'ସେ ନେଇନାହିଁ ଏବଂ ମୋର ଯାଇନାହିଁ' ଆଉ କ୍ରମରେ ତ ଏପରି କହିବେ ଯେ, 'ସେ ନେଇଗଲା ଏବଂ ମୋର ଚାଲିଗଲା ।'

ଏହି ଅକ୍ରମ ବିଜ୍ଞାନ ଲଟେରି ସମାନ ଅଟେ । ଲଟେରିରେ ପୁରସ୍କାର ମିଳେ, ସେଥିରେ ସେ କୌଣସି ପରିଶ୍ରମ କରିଥିଲା ? ଟଙ୍କା ସେ ମଧ୍ୟ ଦେଇଥିଲା ଏବଂ ଅନ୍ୟମାନେ ମଧ୍ୟ ଦେଇଥିଲେ, କିନ୍ତୁ ତା'ର ବାଜିଗଲା । ସେହିପରି ଏହି ଅକ୍ରମ ବିଜ୍ଞାନ, ତୁରନ୍ତ ମୋକ୍ଷ ଦିଏ, ନଗଦ !

## ଅକ୍ରମ ଦ୍ୱାରା ଆମୂଳ ପରିବର୍ତ୍ତନ

ଅକ୍ରମ ବିଜ୍ଞାନ ତ ବହୁତ ବଡ଼ ଆଶ୍ଚର୍ଯ୍ୟ କୁହାଯାଏ । ଏହି 'ଜ୍ଞାନ' ନେବା ପର ଦିନଠାରୁ ହିଁ ମନୁଷ୍ୟର ପରିବର୍ତ୍ତନ ହୋଇଯାଏ । ଏହା ଶୁଣିବା ମାତ୍ରେ ଲୋକଙ୍କୁ ଏହି ବିଜ୍ଞାନ ସ୍ୱୀକାର ହୋଇଯାଏ ଏବଂ ଏଠାକୁ ଟାଣିହୋଇ ଚାଲିଆସନ୍ତି ।

## ଅକ୍ରମ ମାର୍ଗ, ପୁରା ବିଶ୍ୱରେ

ଏହି ସଂଯୋଗ ତ' ବହୁତ ଉଚ୍ଚକୋଟୀର ହୋଇଛି । ଏପରି ଅନ୍ୟ କୌଣସି ଜାଗାରେ ହୋଇନାହିଁ । ଜଣେ ହିଁ ମଣିଷ, 'ଦାଦାଜୀ' ହିଁ ଏହି କାର୍ଯ୍ୟ କରିପାରିଛନ୍ତି, ଅନ୍ୟ କେହି କରିପାରିବେ ନାହିଁ ।

**ପ୍ରଶ୍ନକର୍ତ୍ତା :** ପରେ ମଧ୍ୟ ଦାଦାଜୀଙ୍କ କୃପା ରହିବ ନା ? ଆପଣଙ୍କ ପରେ କ'ଣ ହେବ ?

**ଦାଦାଶ୍ରୀ :** ଏହି ମାର୍ଗ ତ ଚାଲୁ ରହିବ । ମୋର ଇଚ୍ଛା ଯେ କେହି ବି ପ୍ରସ୍ତୁତ ହୋଇଯାଉ, ପରେ ମାର୍ଗ ଚଲାଇବାବାଲା ଦରକାର ନା ?

**ପ୍ରଶ୍ନକର୍ତ୍ତା :** ଦରକାର ।

**ଦାଦାଶ୍ରୀ :** ମୋ ଇଚ୍ଛା ପୂର୍ଣ୍ଣ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** 'ଅକ୍ରମ ବିଜ୍ଞାନ' ଯଦି ଚାଲୁ ରହିବ, ତେବେ ତାହା ନିମିତ୍ତ ଦ୍ୱାରା ଚାଲୁରହିବ !

**ଦାଦାଶ୍ରୀ :** 'ଅକ୍ରମ ବିଜ୍ଞାନ' ଚାଲିବ । ଅକ୍ରମ ବିଜ୍ଞାନ ଯଦି ବର୍ଷେ-ଦୁଇବର୍ଷ ଏହିପରି ଚାଲୁ ରହିବ ତେବେ ଦୁନିଆ ସାରା କେବଳ ଏହି କଥା ଚାଲିବ, ଏବଂ ପହଞ୍ଚିଯିବ ଚରମ ସୀମା ପର୍ଯ୍ୟନ୍ତ (ଚାରି ଦିଗକୁ ପ୍ରଚାର ହୋଇଯିବ) । କାରଣ ଯେପରି ମିଛ କଥା ମୁଣ୍ଡରେ ଚଢ଼ି କୁହନ୍ତି, ସେହିପରି ସତ କଥା ମଧ୍ୟ ମୁଣ୍ଡରେ ଚଢ଼ି କୁହନ୍ତି । ସତ କଥାର ଅମଳ ବିଳମ୍ବରେ ହୁଏ ଏବଂ ମିଛ କଥାର ଅମଳ ଶୀଘ୍ର ହୁଏ ।

## ଅକ୍ରମ ଦ୍ୱାରା ସ୍ତ୍ରୀ'ଙ୍କର ବି ମୋକ୍ଷ

ଲୋକେ କୁହନ୍ତି ଯେ ପୁରୁଷଙ୍କର ହିଁ ମୋକ୍ଷ ହୁଏ, ସ୍ତ୍ରୀମାନଙ୍କର ମୋକ୍ଷ ନାହିଁ । ମୁଁ ସେମାନଙ୍କୁ କୁହେ ଯେ ସ୍ତ୍ରୀମାନଙ୍କର ମଧ୍ୟ ମୋକ୍ଷ ହୁଏ । କାହିଁକି ହେବ

ନାହିଁ ? ତେବେ କୁହନ୍ତି, ସେମାନଙ୍କର କପଟ ଏବଂ ମୋହର ଗ୍ରନ୍ଥୀ ବହୁତ ବଡ଼ । ପୁରୁଷଙ୍କର ଛୋଟ ଗ୍ରନ୍ଥୀ ଥାଏ, ତ ସେମାନଙ୍କର ଏତେ ବଡ଼ ଖମ୍ଭଆଳୁ ପରି ହୋଇଥାଏ ।

ସ୍ତ୍ରୀ ବି ମୋକ୍ଷରେ ଯିବ । ସମସ୍ତେ ମନାକଲେ ମଧ୍ୟ, ସ୍ତ୍ରୀ ମୋକ୍ଷ ପାଇଁ ଯୋଗ୍ୟ । କାରଣ ସେ ଆତ୍ମା ଅଟେ ଏବଂ ପୁରୁଷଙ୍କ ସହିତ ସଂପର୍କରେ ଆସିଛି, ସେଥିପାଇଁ ତା'ର ବି ରାସ୍ତା ବାହାରିବ, ମାତ୍ର ସ୍ତ୍ରୀ ପ୍ରକୃତିରେ ମୋହ ବଳବାନ ହୋଇଥିବାରୁ ଅଧିକ ସମୟ ଲାଗିବ ।

## କାମ କାଢ଼ି ନିଅ

ଯେତେବେଳେ ଦରକାର ହେବ, ସେତେବେଳେ ନିଜ କାମ କାଢ଼ି ନେବ । ଏପରି ମଧ୍ୟ କହୁନାହିଁ ଯେ ତୁମେ ଯେମିତି ହେଲେ ଆସ । ତୁମକୁ ଠିକ ଲାଗୁଛି ତେବେ ଆସ ! ଆଉ ସଂସାର ପସନ୍ଦ ଲାଗୁଛି, ପୋଷାଉଛି, ସେପର୍ଯ୍ୟନ୍ତ ସେହି ବ୍ୟାପାର ଚାଲୁରଖ । ମୋତେ ସେମିତି କିଛି ନାହିଁ ଯେ ତୁମେ ଏହିପରି ହିଁ କର । ଆଉ ମୁଁ ତୁମକୁ ଚିଠି ବି ଲେଖିବାର ନାହିଁ । ଏଠାକୁ ଆସିଛ ତେବେ ତୁମକୁ କହିବି ଯେ 'ଭାଇ, ଲାଭ ଉଠାଇ ନିଅ ।' ଏତିକି ହିଁ କହିବି ତୁମକୁ । ହଜାର ହଜାର ବର୍ଷରୁ ଏଭଳି ବିଜ୍ଞାନ ପ୍ରକଟ ହୋଇନାହିଁ । ସେଥିପାଇଁ ମୁଁ କହୁଛି ଯେ ପରେ ଯାହା ବି ହେବା କଥା ହେଉ, କିନ୍ତୁ ଏହି କାମ କାଢ଼ି ନେବା ଭଳି ଅଟେ ।

# (୯) 'ଜ୍ଞାନୀପୁରୁଷ' କିଏ ?

## ସନ୍ଥପୁରୁଷ : ଜ୍ଞାନୀପୁରୁଷ

**ପ୍ରଶ୍ନକର୍ତ୍ତା :** ଏ ଯେଉଁମାନେ ସବୁ ସନ୍ଥ ହୋଇ ସାରିଛନ୍ତି, ସେମାନେ ଏବଂ ଜ୍ଞାନୀଙ୍କ ମଧ୍ୟରେ ଅନ୍ତର କେତେ ?

**ଦାଦାଶ୍ରୀ :** ସନ୍ଥ କାହାର ନାମ, ଯିଏ ଖରାପ ଛଡ଼ାନ୍ତି ଏବଂ ଭଲ ଶିଖାନ୍ତି । ଭୁଲ କରିବା ଛଡ଼ାନ୍ତି ଏବଂ ଭଲ କରିବା ଶିଖାନ୍ତି, ତାଙ୍କ ନାମ ସନ୍ଥ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ୍ ପାପ କର୍ମରୁ ଯିଏ ବଞ୍ଚାନ୍ତି, ସେ ସନ୍ଥ ?

**ଦାଦାଶ୍ରୀ :** ହଁ, ପାପ କର୍ମରୁ ଯିଏ ବଞ୍ଚାନ୍ତି ସେ ସନ୍ଥ, କିନ୍ତୁ ପାପ-ପୁଣ୍ୟ ଉଭୟରୁ ବଞ୍ଚାନ୍ତି, ସେ ଜ୍ଞାନୀପୁରୁଷ ।

ସନ୍ଥପୁରୁଷ ଉଚିତ ରାସ୍ତା ଦେଖାନ୍ତି ଏବଂ ଜ୍ଞାନୀପୁରୁଷ ମୁକ୍ତି ଦିଅନ୍ତି । ସନ୍ଥଙ୍କୁ ତ ପଥିକ କୁହାଯାଏ । ପଥିକ ଅର୍ଥାତ୍ ସେ ନିଜେ ଚାଲନ୍ତି ଏବଂ ଅନ୍ୟ ପଥିକମାନଙ୍କୁ କୁହନ୍ତି, 'ଚାଲ, ତୁମେ ମୋ ସହିତ ।' ଏବଂ ଜ୍ଞାନୀପୁରୁଷଙ୍କୁ ତ' ଅନ୍ତିମ ଷ୍ଟେସନ୍ କୁହାଯିବ, ସେଠି ତ ଆମର କାମ ହୋଇଯାଏ ।

ପ୍ରକୃତ ସନ୍ଥ କିଏ ? ଯିଏ ମମତା ବିହୀନ ଅଟନ୍ତି । ଆଉ ଅନ୍ୟ ଯେଉଁମାନେ ଅଛନ୍ତି, ସେମାନେ ଅଳ୍ପ ବହୁତ ମମତାବାଲା ଅଟନ୍ତି । ଆଉ ପ୍ରକୃତ ଜ୍ଞାନୀ କିଏ ? ଯାହାର ଅହଂକାର ଏବଂ ମମତା ଉଭୟ ନଥାଏ ।

ଏଣୁ ସନ୍ଥଙ୍କୁ ଜ୍ଞାନୀପୁରୁଷ କୁହାଯାଇ ପାରିବ ନାହିଁ । ସନ୍ଥଙ୍କୁ ଆତ୍ମାର ଭାନ୍ ନଥାଏ । ସେହି ସନ୍ଥ ବି ଯେବେ କେବେ ଜ୍ଞାନୀପୁରୁଷଙ୍କୁ ଭେଟିବେ, ତେବେଯାଇ ତାଙ୍କର ରାସ୍ତା ବାହାରିବ । ସନ୍ଥମାନଙ୍କୁ ମଧ୍ୟ ଜ୍ଞାନୀପୁରୁଷଙ୍କ ଆବଶ୍ୟକତା ଅଛି । ସମସ୍ତଙ୍କୁ ଏଠାକୁ ଆସିବାକୁ ପଡ଼େ, ବାଟ ହିଁ ନାହିଁ ନା ! ପ୍ରତ୍ୟେକଙ୍କର ଏହି ଇଚ୍ଛା ଥାଏ ।

ଜ୍ଞାନୀପୁରୁଷଙ୍କୁ ଦୁନିଆର ଆଶ୍ଚର୍ଯ୍ୟ କୁହାଯାଏ । ଜ୍ଞାନୀପୁରୁଷଙ୍କୁ ପ୍ରଜ୍ୱଳିତ ଦୀପକ କୁହାଯାଏ ।

## ଜ୍ଞାନୀପୁରୁଷଙ୍କ ପରିଚୟ

**ପ୍ରଶ୍ନକର୍ତ୍ତା :** ଜ୍ଞାନୀପୁରୁଷଙ୍କୁ ଚିହ୍ନିବୁ କିପରି ?

**ଦାଦାଶ୍ରୀ :** ଚିହ୍ନିବ କିପରି ? ଜ୍ଞାନୀପୁରୁଷଙ୍କୁ ତ' କିଛି ନକରି ମଧ୍ୟ ଚିହ୍ନିହେବ, ଏପରି ଅଟନ୍ତି ସେ । ତାଙ୍କର ସୁଗନ୍ଧ ହିଁ ଜଣା ପଡ଼ିଯାଏ । ତାଙ୍କର ବାତାବରଣ କିଛିଟା ଅଲଗା ପ୍ରକାରର, ଅଲୌକିକ ହୋଇଥାଏ ! ତାଙ୍କର ବାଣୀ ମଧ୍ୟ ଅଲୌକିକ ହୋଇଥାଏ ! ତାଙ୍କ ଶବ୍ଦରୁ ହିଁ ଜଣା ପଡ଼ିଯାଏ । ଆରେ ! ତାଙ୍କ ଆଖି ଦେଖିବା ମାତ୍ରେ ମାଲୁମ ହୋଇଯାଏ । ଜ୍ଞାନୀଙ୍କ ନିକଟରେ ପ୍ରଗାଢ଼ ବିଶ୍ୱସନୀୟତା ଥାଏ, ଜବରଦସ୍ତ

ବିଶ୍ୱସନୀୟତା ! ଏବଂ ତାଙ୍କର ପ୍ରତ୍ୟେକ ଶବ୍ଦ ଶାସ୍ତ୍ରରୂପୀ ହୋଇଥାଏ, ଯଦି ବୁଝାପଡ଼େ ତେବେ । ତାଙ୍କର ବାଣୀ-ବ୍ୟବହାର ଏବଂ ବିନୟ ମନୋହର ହୋଇଥାଏ, ମନକୁ ହରଣ କରିନେଲା ଭଳି ହୋଇଥାଏ । ଏହିପରି ଅନେକ ଲକ୍ଷଣ ଥାଏ ।

ଜ୍ଞାନୀପୁରୁଷଙ୍କ ଠାରେ ବୁଦ୍ଧିର ଛିଟା ମଧ୍ୟ ନଥାଏ ! ସେ ଅବୁଦ୍ଧ ଅଟନ୍ତି । ବୁଦ୍ଧି କିଞ୍ଚିତ୍‌ମାତ୍ର ନଥିବ, ଏପରି କେତେ ଲୋକ ଥିବେ ? କେବେ-କେମିତି କାହାର ଜନ୍ମ ହୁଏ ଏପରି ଏବଂ ସେତେବେଳେ ଲୋକଙ୍କ କଲ୍ୟାଣ ହୋଇଯାଏ । ସେତେବେଳେ ଲକ୍ଷ ଲକ୍ଷ ମନୁଷ୍ୟ (ସଂସାର ସାଗର) ପହଁରି ପାରି ହୋଇ ଯାଆନ୍ତି । ଜ୍ଞାନୀପୁରୁଷ ଅହଂକାର ବିହୀନ ଅଟନ୍ତି, କିଞ୍ଚିତ୍‌ମାତ୍ର ବି ଅହଂକାର ନଥାଏ । ଅହଂକାର ବିହୀନ ମନୁଷ୍ୟ ଏହି ସଂସାରରେ କେହି ନଥାନ୍ତି । କେବଳ ଜ୍ଞାନୀପୁରୁଷ ହିଁ ଅହଂକାର ବିହୀନ ଅଟନ୍ତି ।

ଜ୍ଞାନୀପୁରୁଷ ତ ହଜାର ହଜାର ବର୍ଷରେ ଜଣେ-ଅଧେ ଜନ୍ମ ହୁଅନ୍ତି । ବାକି, ସନ୍ଥ, ଶାସ୍ତ୍ରଜ୍ଞାନୀ ତ ଅନେକ ହୁଅନ୍ତି । ଆମର ଏଠାରେ ଶାସ୍ତ୍ରର ଜ୍ଞାନୀ ବହୁତ ଅଛନ୍ତି କିନ୍ତୁ ଆତ୍ମାର ଜ୍ଞାନୀ ନାହାନ୍ତି । ଯିଏ ଆତ୍ମାର ଜ୍ଞାନୀ ଅଟନ୍ତି, ସେ ତ' ପରମ ସୁଖି ହୋଇଥାନ୍ତି, ତାଙ୍କୁ କିଞ୍ଚିତମାତ୍ର ବି ଦୁଃଖ ହୁଏ ନାହିଁ । ସେଥିପାଇଁ ତାଙ୍କ ପାଖରେ ନିଜର କଲ୍ୟାଣ ହୋଇଯାଏ । ଯିଏ ନିଜର କଲ୍ୟାଣ କରିସାରି ବସିଥିବେ, ସେ ହିଁ ଆମର କଲ୍ୟାଣ କରିପାରିବେ । ନିଜେ ପାରି ହୋଇ ସାରିଥିବେ, ସେ ହିଁ ଆମକୁ ପାରି କରାଇ ପାରିବେ । ଯିଏ ନିଜେ ବୁଡୁଥିବ, ସେ କେବେ ବି ପାରି କରାଇ ପାରିବ ନାହିଁ ।

# (୧୦) 'ଦାଦା ଭଗବାନ' କିଏ ?

## 'ମୁଁ' ଏବଂ 'ଦାଦା ଭଗବାନ', ନୁହେଁ ଏକ ରେ

**ପ୍ରଶ୍ନକର୍ତ୍ତା :** ତେବେ ଆପଣ ନିଜକୁ ଭଗବାନ କିପରି ବୋଲାଉଛନ୍ତି ?

**ଦାଦାଶ୍ରୀ :** ମୁଁ ନିଜେ ଭଗବାନ ନୁହେଁ । ଭଗବାନଙ୍କୁ, 'ଦାଦା ଭଗବାନ'ଙ୍କୁ ତ ମୁଁ ବି ନମସ୍କାର କରେ । ମୁଁ ନିଜେ ତିନିଶହ ଛପନ ଡିଗ୍ରୀରେ ଅଛି ଏବଂ 'ଦାଦା

ଭଗବାନ' ତିନିଶହ ଷାଠିଏ ଡିଗ୍ରୀରେ ଅଛନ୍ତି । ମୋର ଚାରି ଡିଗ୍ରୀ କମ୍ ଅଛି, ସେଥିପାଇଁ ମୁଁ 'ଦାଦା ଭଗବାନ'ଙ୍କୁ ନମସ୍କାର କରେ ।

**ପ୍ରଶ୍ନକର୍ତ୍ତା :** ତାହା କ'ଣ ପାଇଁ ?

**ଦାଦାଶ୍ରୀ :** କାରଣ ମୋତେ ତ ଚାରି ଡିଗ୍ରୀ ପୁରା କରିବାର ଅଛି । ମୋତେ ପୁରା ତ କରିବାକୁ ପଡ଼ିବ ନା ? ଚାରି ଡିଗ୍ରୀ କମ୍ ରହିଲା, ଫେଲ ହୋଇଗଲି ମାତ୍ର ପାସ୍ ନ ହୋଇ ଚାରା ଅଛି ?

**ପ୍ରଶ୍ନକର୍ତ୍ତା :** ଆପଣଙ୍କୁ ଭଗବାନ ହେବାର ମୋହ ଅଛି କି ?

**ଦାଦାଶ୍ରୀ :** ମୋତେ ତ ଭଗବାନ ହେବା ବହୁତ ବୋଝରୂପୀ ଲାଗେ । ମୁଁ ତ' ଲଘୁତମ ପୁରୁଷ ଅଟେ । ଏହି ଦୁନିଆରେ ମୋ ଠାରୁ ଲଘୁ କେହି ନାହିଁ, ଏପରି ମୁଁ ଲଘୁତମ ଅଟେ । ଅର୍ଥାତ୍ ଭଗବାନ ହେବା ମୋତେ ବୋଝପରି ଲାଗେ, ଓଲଟା ଲାଜ ଲାଗୁଛି !

**ପ୍ରଶ୍ନକର୍ତ୍ତା :** ଭଗବାନ ହେବାର ନାହିଁ ତେବେ ପୁଣି ଏହି ଚାରି ଡିଗ୍ରୀ ପୁରା କରିବାର ପୁରଷାର୍ଥ କାହିଁକି କରୁଛନ୍ତି ?

**ଦାଦାଶ୍ରୀ :** ତାହା ତ' ମୋକ୍ଷରେ ଯିବା ପାଇଁ । ମୋତେ ଭଗବାନ ହୋଇ କ'ଣ କରିବାର ଅଛି ? ଭଗବାନ ଅର୍ଥାତ୍, ଯେଉଁମାନେ ଭଗବତ୍ ଗୁଣ ଧାରଣ କରୁଥିବେ, ସେମାନେ ସମସ୍ତେ ଭଗବାନ ଅଟନ୍ତି । 'ଭଗବାନ' ଶବ୍ଦ ବିଶେଷଣ ଅଟେ । କେହି ବି ମନୁଷ୍ୟ ତାହାର ଯୋଗ୍ୟ ହୋଇଯାଏ, ତେବେ ଲୋକେ ତା'କୁ ଭଗବାନ କହିବେ ହିଁ କହିବେ ।

## ଏଠାରେ ପ୍ରକଟ ହେଲେ, ଚଉଦ ଲୋକର ନାଥ

**ପ୍ରଶ୍ନକର୍ତ୍ତା :** 'ଦାଦା ଭଗବାନ' ଶବ୍ଦର ପ୍ରୟୋଗ କାହାପାଇଁ କରାଯାଇଛି ?

**ଦାଦାଶ୍ରୀ :** 'ଦାଦା ଭଗବାନ'ଙ୍କ ପାଇଁ ! ମୋ ପାଇଁ ନୁହେଁ, ମୁଁ ତ ଜ୍ଞାନୀପୁରୁଷ ଅଟେ ।

**ପ୍ରଶ୍ନକର୍ତ୍ତା :** କେଉଁ ଭଗବାନ ?

**ଦାଦାଶ୍ରୀ :** 'ଦାଦା ଭଗବାନ', ଯିଏ ଚଉଦ ଲୋକର ନାଥ ଅଟନ୍ତି । ସେ ତୁମ ଭିତରେ ମଧ୍ୟ ଅଛନ୍ତି, କିନ୍ତୁ ତୁମ ଭିତରେ ପ୍ରକଟ ହୋଇ ନାହାନ୍ତି । ତୁମ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ ଏଠାରେ ବ୍ୟକ୍ତ ହୋଇଛନ୍ତି । ଯିଏ ବ୍ୟକ୍ତ ହୋଇଛନ୍ତି, ସେ ଫଳ ଦିଅନ୍ତି । ଥରେ ଯଦି ବି ତାଙ୍କର ନାମ ନେବା ତେବେ ମଧ୍ୟ କାମ ହୋଇଯିବ, ଏପରି ଅଟେ । ମାତ୍ର ପରିଚୟ ପାଇସାରିବା ପରେ କହିଲେ ତ କଲ୍ୟାଣ ହୋଇଯିବ ଏବଂ ସଂସାରିକ ବସ୍ତୁର ଯଦି ସମସ୍ୟା ଥାଏ ତେବେ ତାହା ମଧ୍ୟ ଦୂର ହୋଇଯିବ । କିନ୍ତୁ ସେଥିରେ ଲୋଭ କରିବ ନାହିଁ ଆଉ ଲୋଭ କରିବାକୁ ଯିବ ତେବେ ଅନ୍ତ ହିଁ ଆସିବ ନାହିଁ । ତୁମେ ବୁଝିପାରିଲ, 'ଦାଦା ଭଗବାନ' କିଏ ?

ଏ ଯିଏ ଦେଖା ଯାଉଛନ୍ତି, ସେ 'ଦାଦା ଭଗବାନ' ନୁହନ୍ତି । ଯିଏ ଦେଖାଯାଉଛନ୍ତି, ତାଙ୍କୁ ହିଁ ତୁମେ 'ଦାଦା ଭଗବାନ' ମନେ କରୁଛ ବୋଧହୁଏ ? ମାତ୍ର ଏହି ଦେଖା ଯାଉଥିବା ଜଣକ ତ' ଭାଦରଣ(ଗୁଜରାଟର ଏକ ଗାଁ)ର ପଟେଲ ଅଟେ । ମୁଁ 'ଜ୍ଞାନୀପୁରୁଷ' ଅଟେ ଏବଂ 'ଦାଦା ଭଗବାନ' ତ' ଭିତରେ ବସିଛନ୍ତି, ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ । ଚଉଦ ଲୋକର ନାଥ ପ୍ରକଟ ହୋଇଛନ୍ତି, ତାଙ୍କୁ ମୁଁ ନିଜେ ଦେଖିଛି, ନିଜେ ଅନୁଭବ କରିଛି । ସେଥିପାଇଁ ମୁଁ ଗ୍ୟାରେଣ୍ଟୀ ସହିତ କହୁଛି ଯେ ସେ ଭିତରେ ପ୍ରକଟ ହୋଇଛନ୍ତି ।

ଆଉ ଏହି ସବୁ କଥା କିଏ କହୁଛି ? 'ଟେପ୍‌ରେକର୍ଡର' କଥା କହୁଛି । କାରଣ 'ଦାଦା ଭଗବାନ'ଙ୍କଠାରେ କହିବାର ଶକ୍ତି ନାହିଁ ଆଉ ଏହି 'ପଟେଲ' ତ ଟେପରେକର୍ଡର ଆଧାରରେ କହୁଛନ୍ତି । କାହିଁକିନା 'ଭଗବାନ' ଏବଂ 'ପଟେଲ' ଦୁହେଁ ଅଲଗା ହେଲେ, ଏଥିପାଇଁ ସେଠାରେ ଅହଂକାର କରିହେବ ନାହିଁ । ଏହି ଟେପ୍‌ରେକର୍ଡର କୁହେ, ତାହାର ମୁଁ ଜ୍ଞାତା-ଦ୍ରଷ୍ଟା ରୁହେ । ତୁମର ବି ଟେପ୍‌ରେକର୍ଡର କୁହେ, କିନ୍ତୁ ତୁମ ମନରେ 'ମୁଁ କହିଲି' ଏପରି ଗର୍ବରସ ଉତ୍ପନ୍ନ ହୁଏ । ବାକି, ମୋତେ ମଧ୍ୟ ଦାଦା ଭଗବାନଙ୍କୁ ନମସ୍କାର କରିବାକୁ ପଡ଼େ । ମୋର ଦାଦା ଭଗବାନଙ୍କ ସହିତ ଜୁଦାପଣ(ଭିନ୍ନତା)ର ବ୍ୟବହାର ଅଟେ । ବ୍ୟବହାର ହିଁ ଭିନ୍ନତାର ଅଟେ । କିନ୍ତୁ ଲୋକେ ଏପରି ବୁଝନ୍ତି ଯେ, ଇଏ ନିଜେ ହିଁ 'ଦାଦା ଭଗବାନ' ଅଟନ୍ତି । ନା, ନିଜେ ଦାଦା ଭଗବାନ କିପରି ହୋଇପାରିବି ? ଇଏ ତ ପଟେଲ ଅଟନ୍ତି, ଭାଦରଣ ଗାଁ'ର ।

# (୧୧) ସୀମନ୍ଧର ସ୍ୱାମୀ କିଏ ?

## ତୀର୍ଥଙ୍କର ଭଗବାନ ଶ୍ରୀ ସୀମନ୍ଧର ସ୍ୱାମୀ

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀ କିଏ, ଏହା ବୁଝାଇବାର କୃପା କରିବେ ?

**ଦାଦାଶ୍ରୀ :** ସୀମନ୍ଧର ସ୍ୱାମୀ ବର୍ତ୍ତମାନର ତୀର୍ଥଙ୍କର ସାହେବ ଅଟନ୍ତି । ସେ ଅନ୍ୟ କ୍ଷେତ୍ରରେ ଅଛନ୍ତି । ଯେପରି ଋଷଭଦେବ ଭଗବାନ ହେଲେ, ମହାବୀର ଭଗବାନ ହେଲେ, ସେହିପରି ସୀମନ୍ଧର ସ୍ୱାମୀ ତୀର୍ଥଙ୍କର ଅଟନ୍ତି । ଯିଏ ଆଜି ମଧ୍ୟ ମହାବିଦେହ କ୍ଷେତ୍ରରେ ବିଚରଣ କରୁଛନ୍ତି ।

ବାକି, ମହାବୀର ଭଗବାନ ତ ସବୁ କହି ଯାଇଛନ୍ତି । କିନ୍ତୁ ଲୋକଙ୍କ ସମଝ(ବୁଝିବା) ଟେଢ଼ା ହେବ ତେବେ କ'ଣ ହୋଇପାରିବ ? ସେଥିପାଇଁ ଫଳପ୍ରାପ୍ତି ହେଉନାହିଁ ନା ?

ଭଗବାନ ମହାବୀର କହିଯାଇଥିଲେ ଯେ 'ଏବେ ଚବିଶ ପୂର୍ଣ୍ଣ ହେଉଛି, ଏବେ (ଭରତ କ୍ଷେତ୍ରରେ) ତୀର୍ଥଙ୍କର ହେବେ ନାହିଁ, ତେଣୁ ମହାବିଦେହ କ୍ଷେତ୍ରରେ ଯେଉଁ ତୀର୍ଥଙ୍କର ଅଛନ୍ତି, ତା'ଙ୍କୁ ଭଜିବ । ସେଠାରେ ବର୍ତ୍ତମାନ ତୀର୍ଥଙ୍କର ଅଛନ୍ତି, ତାଙ୍କର ଭଜନ କରିବ ।' କିନ୍ତୁ ଏହା ତ ଏବେ ଲୋକଙ୍କର ଲକ୍ଷ୍ୟରେ ହିଁ ନାହିଁ । ଆଉ ଏହି ଚବିଶ ଜଣଙ୍କୁ ହିଁ ତୀର୍ଥଙ୍କର କହୁଛନ୍ତି, ସବୁଲୋକ !

## ଖିଆଲରେ ତ' ସୀମନ୍ଧର ସ୍ୱାମୀ ହିଁ

ଲୋକମାନେ ମୋତେ କୁହନ୍ତି ଯେ ଆପଣ ସୀମନ୍ଧର ସ୍ୱାମୀଙ୍କ ଭଜନ କାହିଁକି କରାଉଛନ୍ତି । ଚବିଶ ତୀର୍ଥଙ୍କରଙ୍କର କାହିଁକି କରାଉ ନାହାନ୍ତି ? ମୁଁ କହିଲି, ଚବିଶ ତୀର୍ଥଙ୍କରଙ୍କୁ ମଧ୍ୟ ପ୍ରାର୍ଥନା କରେ ମାତ୍ର ମୁଁ ରୀତି ଅନୁସାରେ କରେ । ସୀମନ୍ଧର ସ୍ୱାମୀଙ୍କର ଅଧିକ କରେ । ସେ ବର୍ତ୍ତମାନ ତୀର୍ଥଙ୍କର ଅଟନ୍ତି ଏବଂ ଏହି 'ନମୋ ଅରିହଂତାଣଂ' ତାଙ୍କୁ ହିଁ ପହଞ୍ଚେ । ନବକାର ମନ୍ତ୍ର ପଢ଼ିବା ସମୟରେ ସୀମନ୍ଧର ସ୍ୱାମୀ ଖିଆଲରେ ରହିବା ଉଚିତ୍, ତେବେଯାଇ ତୁମର ନବକାର ମନ୍ତ୍ର ଶୁଦ୍ଧ ହେଲା କୁହାଯିବ ।

## ଋଣାନୁବନ୍ଧ, ଭରତ କ୍ଷେତ୍ରର

**ପ୍ରଶ୍ନକର୍ତ୍ତା :** ସୀମନ୍ଧର ସ୍ୱାମୀଙ୍କ ବର୍ଣ୍ଣନା କରନ୍ତୁ ।

**ଦାଦାଶ୍ରୀ :** ସୀମନ୍ଧର ସ୍ୱାମୀଙ୍କ ବୟସ ବର୍ତ୍ତମାନ ଏକ ଲକ୍ଷ ପଞ୍ଚସ୍ତରୀ ହଜାର ବର୍ଷ ଅଟେ । ସେ ମଧ୍ୟ ଋଷଭଦେବ ଭଗବାନଙ୍କ ପରି ଅଟନ୍ତି । ଋଷଭଦେବ ଭଗବାନ ସାରା ବ୍ରହ୍ମାଣ୍ଡର ଭଗବାନ କୁହାଯାନ୍ତି । ସେହିପରି ଇଏ ମଧ୍ୟ ସାରା ବ୍ରହ୍ମାଣ୍ଡର ଭଗବାନ ଅଟନ୍ତି । ସେ ଆମର ଏଠି ନାହାନ୍ତି କିନ୍ତୁ ଅନ୍ୟଭୂମିରେ, ମହାବିଦେହ କ୍ଷେତ୍ରରେ ଅଛନ୍ତି ଯେଉଁଠିକୁ ମନୁଷ୍ୟ ଯାଇପାରିବ ନାହିଁ । ଜ୍ଞାନୀ (ଙ୍କୁ ଭଗବାନଙ୍କ ଠାରୁ ଯଦି କିଛି ପ୍ରଶ୍ନର ଉତ୍ତର ପଚ୍ଚରିବାକୁ ଥିବ ତେବେ) ନିଜର ଶକ୍ତି ସେଠାକୁ ପଠାନ୍ତି, ସେ ପଚାରିକି ଆସେ । ସେଠାକୁ ଏହି ସ୍ଥୂଳ ଦେହରେ ଯାଇ ପାରିବା ନାହିଁ, ମାତ୍ର ସେଠାରେ ଜନ୍ମ ହେବା ପରେ ଯାଇ ପାରିବା । ଯଦି ଏଠାରୁ ସେ ଭୂମିକୁ ଯିବା ପାଇଁ ଯୋଗ୍ୟ ହୋଇଯାଏ ତେବେ ସେଠାରେ ଜନ୍ମ ମଧ୍ୟ ହୁଏ ।

ପ୍ରାୟ ଅଢ଼େଇ ହଜାର ବର୍ଷ ହେବ, ଆମର ଏଠାରେ ଭରତକ୍ଷେତ୍ରରେ ତୀର୍ଥଙ୍କରଙ୍କ ଜନ୍ମ ହେବା ବର୍ତ୍ତମାନ ପାଇଁ ବନ୍ଦ ହୋଇଯାଇଛି । ତୀର୍ଥଙ୍କର ଅର୍ଥାତ୍ ଚରମ, 'ଫୁଲ ମୁନ୍' (ପୂର୍ଣ୍ଣ ଚନ୍ଦ୍ର) । କିନ୍ତୁ ସେଠାରେ ମହାବିଦେହ କ୍ଷେତ୍ରରେ ସବୁବେଳ ପାଇଁ ତୀର୍ଥଙ୍କର ରୁହନ୍ତି । ସୀମନ୍ଧର ସ୍ୱାମୀ ସେଠାରେ ଆଜି ବି ଜୀବିତ ଅଛନ୍ତି । ଆମ ପରି ହିଁ ଦେହ ଅଟେ, ସବୁ କିଛି ।

# (୧୨) 'ଅକ୍ରମ ମାର୍ଗ' ଖୋଲା ହିଁ ଅଛି

## ପଛରେ ଜ୍ଞାନୀଙ୍କ ବଂଶାବଳୀ

ମୁଁ ମୋ ପଛରେ ଜ୍ଞାନୀଙ୍କ ବଂଶାବଳୀ ଛାଡ଼ିଦେଇ ଯିବି । ମୋର ଉତ୍ତରାଧିକାରୀ ଛାଡ଼ିଦେଇ ଯିବି ଏବଂ ତା'ପରେ ଜ୍ଞାନୀଙ୍କ ଲିଙ୍କ୍ ଚାଲୁ ରହିବ । ଏଣୁ ସଜୀବନ ମୂର୍ତ୍ତି ଖୋଜିବ । ତାହା ବିନା ଅନ୍ୟ କିଛି ରାସ୍ତା ନାହିଁ ।

ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ କେହି ଦରକାର କି ନାହିଁ ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?

## ଯାହାକୁ ଜଗତ ସ୍ୱୀକାର କରିବ, ତା'ର ଚାଲିବ

**ପ୍ରଶ୍ନକର୍ତ୍ତା :** ଆପଣ କୁହନ୍ତି ଯେ ମୋ ପଛରେ ଚାଳିଶ-ପଚାଶ ହଜାର କାନ୍ଦିବାବାଲା ଥିବେ ମାତ୍ର ଶିଷ୍ୟ ଜଣେ ବି ନଥିବେ । ଏଥିରେ ଆପଣ କ'ଣ କହିବା ପାଇଁ ଚାହୁଁଛନ୍ତି ?

**ଦାଦାଶ୍ରୀ :** ମୋର ଶିଷ୍ୟ କେହି ନଥିବେ । ଏହା କୌଣସି ଗାଦି ନୁହେଁ । ଗାଦି ଥିବ ତେବେ ଉତ୍ତରାଧିକାରୀ ହେବେ ନା ! କେହି ସମ୍ପର୍କୀୟ ହିସାବରେ ଉତ୍ତରାଧିକାରୀ ହେବା ପାଇଁ ଆସିବେ ! ଏଠି ତ' ଯିଏ ସ୍ୱୀକାର୍ଯ୍ୟ ହେବ, ତା'ର ଚାଲିବ । ଯିଏ ସମସ୍ତଙ୍କର ଶିଷ୍ୟ ହେବ, ତା'ର କାମ ହେବ । ଏଠି ତ' ଲୋକେ ଯାହାକୁ ସ୍ୱୀକାର କରିବେ, ତା'ର ଚାଲିବ । ଯିଏ ଲଘୁତମ ହେବ, ତା'କୁ ହିଁ ଜଗତ ସ୍ୱୀକାର କରିବ ।

# (୧୩) ଆତ୍ମଦୃଷ୍ଟି ହେବା ପରେ...

## ଆତ୍ମପ୍ରାପ୍ତିର ଲକ୍ଷଣ

'ଜ୍ଞାନ' ମିଳିବା ପୂର୍ବରୁ ତୁମେ ଚନ୍ଦୁଲାଲ ଥିଲ ଏବଂ ଏବେ ଜ୍ଞାନ ନେବା ପରେ ଶୁଦ୍ଧାତ୍ମା ହେଲ, ତେବେ ଅନୁଭବରେ କିଛି ଫରକ ଲାଗୁଛି ?

**ପ୍ରଶ୍ନକର୍ତ୍ତା :** ହଁ ଆଜ୍ଞା ।

**ଦାଦାଶ୍ରୀ :** 'ମୁଁ ଶୁଦ୍ଧାତ୍ମା ଅଟେ', ଏହି ଭାନ୍(ଲକ୍ଷ୍ୟ) ତୁମକୁ କେତେ ସମୟ ରହୁଛି ?

**ପ୍ରଶ୍ନକର୍ତ୍ତା :** ଏକାନ୍ତରେ ଏକୁଟିଆ ବସିଥିବା ବେଳେ ।

**ଦାଦାଶ୍ରୀ :** ହଁ । ପରେ କେଉଁ ଭାବ ରୁହେ ? ତୁମକୁ କେବେ ଏପରି ଭାବ ହେଉଛି କି ଯେ 'ମୁଁ ଚନ୍ଦୁଭାଇ ଅଟେ' ? ତୁମକୁ ରିୟଲି 'ମୁଁ ଚନ୍ଦୁଭାଇ ଅଟେ' ଏପରି ଭାବ କେବେ ହୋଇଥିଲା କି ?

**ପ୍ରଶ୍ନକର୍ତ୍ତା :** ଜ୍ଞାନ ନେବାପରେ ହୋଇନାହିଁ ।

**ଦାଦାଶ୍ରୀ :** ତେବେ ତୁମେ ଶୁଦ୍ଧାତ୍ମା ହିଁ ଅଟ । ମନୁଷ୍ୟକୁ ଗୋଟିଏ ହିଁ ଭାବ ରହି ପାରିବ । ଅର୍ଥାତ୍ 'ମୁଁ ଶୁଦ୍ଧାତ୍ମା ଅଟେ' ଏହା ତୁମକୁ ନିରନ୍ତର ରହୁଛି ।

**ପ୍ରଶ୍ନକର୍ତ୍ତା :** ମାତ୍ର ଅନେକ ସମୟରେ ବ୍ୟବହାରରେ ଶୁଦ୍ଧାତ୍ମାର ଖିଆଲ ରହୁ ନାହିଁ ।

**ଦାଦାଶ୍ରୀ :** ତେବେ କ'ଣ 'ମୁଁ ଚନ୍ଦୁଭାଇ ଅଟେ' ଏପରି ଧ୍ୟାନ ରହୁଛି ? ତିନି ଘଣ୍ଟା ପାଇଁ ଶୁଦ୍ଧାତ୍ମାର ଧ୍ୟାନ ରହିଲା ନାହିଁ ଏବଂ ତିନି ଘଣ୍ଟା ପରେ ଯଦି ପଚରା ଯାଏ, 'ତୁମେ ଚନ୍ଦୁଭାଇ ଅଟ ନା ଶୁଦ୍ଧାତ୍ମା ?' ସେତେବେଳେ କ'ଣ କହିବ ?

**ପ୍ରଶ୍ନକର୍ତ୍ତା :** ଶୁଦ୍ଧାତ୍ମା ।

**ଦାଦାଶ୍ରୀ :** ଅର୍ଥାତ୍ ସେହି ଧ୍ୟାନ ଥିଲା । କେହି ସେଠ୍, ଯଦି ସେ ମଦ ପିଇଥିବେ, ସେହି ସମୟରେ ସବୁ ଧ୍ୟାନ ଚାଲିଯାଏ, ମାତ୍ର ମଦ ନିଶା ଛାଡ଼ିଯିବା ପରେ... ?

**ପ୍ରଶ୍ନକର୍ତ୍ତା :** ପୁଣି ଜାଗୃତ ହୋଇଯିବେ ।

**ଦାଦାଶ୍ରୀ :** ସେହିପରି ଏହା ମଧ୍ୟ ଅଲଗା, ବାହାରର ପ୍ରଭାବ ଅଟେ ।

ମୁଁ ଯଦି ପଚାରେ, ବାସ୍ତବରେ ତୁମେ 'ଚନ୍ଦୁଭାଇ' ଅଟ ନା 'ଶୁଦ୍ଧାତ୍ମା' ? ତୁମେ କୁହ ଯେ 'ଶୁଦ୍ଧାତ୍ମା' । ଦ୍ୱିତୀୟ ଦିନ ତୁମକୁ ପଚାରେ ଯେ 'ତୁମେ ବାସ୍ତବରେ କିଏ ?' ତେବେ ତୁମେ କୁହ 'ଶୁଦ୍ଧାତ୍ମା' । ପାଞ୍ଚ ଦିନ ପର୍ଯ୍ୟନ୍ତ ମୁଁ ପଚାରି ଚାଲେ, ଏହାପରେ ମୁଁ ବୁଝିଯାଏ ଯେ ତୁମ ଚାବି ମୋ ପାଖରେ ଅଛି । ତା'ପରେ ଅଭିଯୋଗ କଲେ ମଧ୍ୟ ମୁଁ ଶୁଣିବି ନାହିଁ । ପଛେ ତୁମେ ଚିତ୍କାର କର ।

## ହେଲା ଅପୂର୍ବ ଭାନ୍(ଲକ୍ଷ୍ୟ)

ଶ୍ରୀମଦ୍ ରାଜଚନ୍ଦ୍ରଜୀ କ'ଣ କୁହନ୍ତି ଯେ,

'ସଦ୍‌ଗୁରୁ କେ ଉପଦେଶ ସେ ଆୟା ଅପୂର୍ବ ଭାନ୍,
ନିଜପଦ, ନିଜ ମାହୀ ମିଲା, ଦୂର ଭୟା ଅଜ୍ଞାନ ।'

ପୂର୍ବରୁ ଦେହଧ୍ୟାସର ହିଁ ଭାନ୍ ଥିଲା । ଦେହାଧ୍ୟାସ ରହିତ ଭାନ୍ ପୂର୍ବରୁ ଆମକୁ ନଥିଲା । ସେହି ଅପୂର୍ବ ଭାନ୍, ସେହି ଆତ୍ମାର ଭାନ୍ ଆମକୁ ହେଲା । ଯାହା 'ନିଜ'ର ନିଜପଦ ଥିଲା ଯେ 'ମୁଁ ଚନ୍ଦୁଭାଇ ଅଟେ' ଏପରି କହୁଥିଲା, ସେହି 'ମୁଁ' ଏବେ ନିଜ ମଧ୍ୟରେ ମିଶିଗଲା । ଯାହା ନିଜପଦ ଥିଲା, ତାହା ନିଜ ମଧ୍ୟରେ ମିଶିଗଲା, ଏବଂ ଯାହା ଅଜ୍ଞାନ ଥିଲା ଯେ 'ମୁଁ ଚନ୍ଦୁଭାଇ ଅଟେ' ସେହି ଅଜ୍ଞାନ ଦୂର ହୋଇଗଲା ।

## ଏହାକୁ କୁହାଯାଏ ଦେହାଧ୍ୟାସ

ଜଗତ ଦେହାଧ୍ୟାସରୁ ମୁକ୍ତ ହୋଇପାରିବ ନାହିଁ ଏବଂ ନିଜ ସ୍ୱରୂପରେ ରହିପାରିବ ନାହିଁ । ତୁମେ ସ୍ୱରୂପରେ ରହିଲ ଅର୍ଥାତ୍ ଅହଂକାର ଗଲା, ମମତା ଗଲା । 'ମୁଁ ଚନ୍ଦୁଭାଇ ଅଟେ' ଏହା ଦେହାଧ୍ୟାସ କୁହାଯାଏ ଏବଂ ଯେବେଠୁ 'ମୁଁ ଶୁଦ୍ଧାତ୍ମା ଅଟେ' ଏହି ଲକ୍ଷ୍ୟ ଆସିଲା, ସେବେଠୁ କୌଣସି ପ୍ରକାରର ଅଧ୍ୟାସ (ଭ୍ରାନ୍ତିମୟ ପ୍ରତୀତି) ରହିଲା ନାହିଁ । ଏବେ କିଛି ବାକି ରହିଲା ନାହିଁ । ତଥାପି କିଛି ଭୁଲ୍‌ଭାଲ୍ ହୋଇଗଲେ ଟିକିଏ ଘୁଟନ୍ (ଅନ୍ତର୍ବେଦନା) ଅନୁଭବ ହେବ ।

## ଶୁଦ୍ଧାତ୍ମା ପଦ ଶୁଦ୍ଧ ହିଁ ଅଟେ

ଏହି 'ଜ୍ଞାନ' ନେଲା ପରେ, ପ୍ରଥମେ ଯେଉଁ ଭ୍ରାନ୍ତି ଥିଲା ଯେ 'ମୁଁ କରୁଛି', ସେହି ଭାନ୍(ଖିଆଲ) ଭଗ୍ନ ହୋଇଗଲା । ଏଣୁ 'ମୁଁ ଶୁଦ୍ଧ ହିଁ ଅଟେ', ଏହି ଭାନ୍ ରହିବା ପାଇଁ 'ଶୁଦ୍ଧାତ୍ମା' କହିଲି । କାହା ସହିତ କିଛି ବି ହୋଇଯାଉ, 'ଚନ୍ଦୁଭାଇ' ଅନ୍ୟକୁ ଗାଳି ଦିଅନ୍ତୁ, ତଥାପି ତୁମେ ଶୁଦ୍ଧ ହିଁ ଅଟ । ପରେ 'ଆମେ' ଚନ୍ଦୁଭାଇଙ୍କୁ କହିବା ଦରକାର ଯେ 'ଭାଇ, କାହାକୁ ଦୁଃଖ ପହଞ୍ଚିଲା ଭଳି ଅତିକ୍ରମଣ କାହିଁକି କରୁଛ ? ଏଣୁ ପ୍ରତିକ୍ରମଣ କର ।'

କାହାକୁ ଦୁଃଖ ପହଞ୍ଚିଲା ଭଳି କିଛି କହି ଦେଇଥିବ, ତେବେ ତାହା 'ଅତିକ୍ରମଣ କଲ' କୁହାଯିବ । ତାହାର ପ୍ରତିକ୍ରମଣ କରିବା ଉଚିତ୍ ।

ପ୍ରତିକ୍ରମଣ, ଅର୍ଥାତ୍ ତୁମକୁ ନିଜକୁ ବୁଝାପଡ଼ିବା ପରି, ତାହାର କ୍ଷମା ମାଗିବ । ଦୋଷ କଲି, ଏହା ମୁଁ ବୁଝି ପାରିଲି ଏବଂ ଏବେ ଆଉ ଏପରି ଦୋଷ କରିବି ନାହିଁ, ଏପରି 'ନିଶ୍ଚୟ' କରିବା ଉଚିତ୍ । ଏପରି କଲି, ତାହା ଭୁଲ କଲି, ଏପରି ନହେବା

ଉଚିତ । ଆଉ କେବେ ଏପରି କରିବି ନାହିଁ, ଏପରି ପ୍ରତିଜ୍ଞା କରିବ । ତଥାପି ଯଦି ଦ୍ୱିତୀୟଥର ସେହି ଦୋଷ ହୋଇଯାଏ, ତେବେ ପୁଣିଥରେ ପଶ୍ଚାତାପ କରିବ । ଯେତିକି ଦୋଷ ଦେଖାଗଲା, ସେମାନଙ୍କର ପଶ୍ଚାତାପ କଲ ତେବେ ସେତିକି ଦୋଷ କମ ହୋଇଗଲା । ଏପରି କରୁ କରୁ ଶେଷରେ ସମସ୍ତ ଦୋଷ ଧିରେ ଧିରେ ଖତମ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** କୌଣସି ବ୍ୟକ୍ତିର ପ୍ରତିକ୍ରମଣ କିପରି କରିବା ଉଚିତ୍ ?

**ଦାଦାଶ୍ରୀ :** ମନ-ବଚନ-କାୟା, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମ, (ସେହି ବ୍ୟକ୍ତିର) ନାମ ଏବଂ ତା' ନାମର ସର୍ବମାୟାରୁ, ଭିନ୍ନ ଏପରି ତା'ର ଶୁଦ୍ଧାତ୍ମାଙ୍କୁ ମନେ ପକାଇବ, ଏବଂ ପୁଣି ଯାହା ବି ଭୁଲ ହୋଇଛି ତାହା ମନେ ପକାଇବ (ଆଲୋଚନା), ସେହି ଭୁଲ ପାଇଁ ମୁଁ ପଶ୍ଚାତାପ କରୁଛି ଏବଂ ସେଥିପାଇଁ ମୋତେ କ୍ଷମା କରନ୍ତୁ (ପ୍ରତିକ୍ରମଣ), ଆଉ ଏପରି ଭୁଲ ହେବ ନାହିଁ ଏପରି ଦୃଢ଼ 'ନିଶ୍ଚୟ' କରୁଛି, ଏପରି ସ୍ଥିର କରନ୍ତୁ (ପ୍ରତ୍ୟାଖ୍ୟାନ) । 'ଆମେ' ନିଜେ 'ଚନ୍ଦୁଭାଇ'ର ଜ୍ଞାତା-ଦ୍ରଷ୍ଟା ରହିବା ଏବଂ ଜାଣିବା ଯେ 'ଚନ୍ଦୁଭାଇ' କେତେ ପ୍ରତିକ୍ରମଣ କଲେ, କେତେ ସୁନ୍ଦର କଲେ, ଏବଂ କେତେ ଥର କଲେ ।

## ପ୍ରଜ୍ଞା ଭିତରୁ ଚେତାଏ

ଏହା ବିଜ୍ଞାନ ଅଟେ ସେଥିପାଇଁ ଆମକୁ ଏହାର ଅନୁଭବ ହୁଏ ଏବଂ ଭିତରୁ ହିଁ ଚେତାଇବ । ସେଥିରେ(କ୍ରମିକରେ) ତ ଆମକୁ କରିବାକୁ ପଡ଼େ ଆଉ ଏଠି ଭିତରୁ ହିଁ ଚେତାଇ ଥାଏ ।

**ପ୍ରଶ୍ନକର୍ତ୍ତା :** ଭିତରୁ ଚେତାବନୀ ମିଳେ, ଏ ଅନୁଭବ ହୋଇଛି ।

**ଦାଦାଶ୍ରୀ :** ଏବେ ଆମକୁ ଏହି ମାର୍ଗ ମିଳିଗଲା ଏବଂ ଶୁଦ୍ଧାତ୍ମାର ଯେଉଁ ବାଉଣ୍ଡ୍ରି (ସୀମା-ରେଖା) ଅଛି, ତାହାର ପ୍ରଥମ ଦ୍ୱାର ମଧ୍ୟକୁ ପ୍ରବେଶ ମିଳିଗଲା, ଯେଉଁଠାରୁ କେହି ବାହାର କରି ପାରିବେ ନାହିଁ । କାହାରିକୁ ବାହାର କାରିବାର ଅଧିକାର ନାହିଁ, ଏପରି ଜାଗାରେ ତୁମକୁ ପ୍ରବେଶ ମିଳିଛି ।

ବାରମ୍ବାର କିଏ ସଚେତନ କରୁଛି ? ପ୍ରଜ୍ଞା ! ଜ୍ଞାନ ପ୍ରାପ୍ତି ବିନା ପ୍ରଜ୍ଞାର ପ୍ରାରମ୍ଭ

ହୁଏ ନାହିଁ । ନଚେତ ପୁଣି ସମ୍ୟକତ୍ୱ ହେବା ପରେ ହିଁ ପ୍ରଜ୍ଞାର ପ୍ରାରମ୍ଭ ହୋଇଥାଏ । ସମ୍ୟକତ୍ୱରେ ପ୍ରଜ୍ଞାର ପ୍ରାରମ୍ଭ କିପରି ହୋଇଥାଏ ? ଦ୍ୱିତୀୟା ଚାନ୍ଦ ପରି ଆରମ୍ଭ ହୋଇଥାଏ, ଯେବେକି ଆମର ଏଠି ତ' ପୂର୍ଣ୍ଣ ପ୍ରଜ୍ଞା ଉତ୍ପନ୍ନ ହୋଇଯାଏ । ଫୁଲ୍ (ପୂର୍ଣ୍ଣ) ପ୍ରଜ୍ଞା ଅର୍ଥାତ୍ ତାହା କେବଳ ମୋକ୍ଷରେ ହିଁ ନେଇଯିବା ପାଇଁ ଚେତାଇ ଥାଏ । ଭରତ ରାଜାଙ୍କୁ ତ' ଚେତାଇବା ପାଇଁ ଚାକର ରଖିବାକୁ ପଡ଼ିଥିଲା । ଯେଉଁମାନେ ପ୍ରତି ପନ୍ଦର ମିନିଟରେ ଥରେ ଡାକ ପକାଉଥିଲେ ଯେ 'ଭରତ ରାଜା ! ଚେତ୍, ଚେତ୍, ଚେତ୍ ! ! !' ତିନିଥର ଡାକ ପକାଉଥିଲେ । ଦେଖ, ତୁମକୁ ତ' ଭିତରରୁ ହିଁ ପ୍ରଜ୍ଞା ଚେତାଉଛି । ପ୍ରଜ୍ଞା ନିରନ୍ତର ଚେତାଉଥାଏ, ଯେ 'ଏ, ଏପରି ନୁହେଁ' । ଦିନସାରା ଚେତାଉଥାଏ ଏବଂ ଏହା ହିଁ ଆତ୍ମାର ଅନୁଭବ ! ନିରନ୍ତର, ସାରାଦିନ ଆତ୍ମାର ଅନୁଭବ ।

## ଅନୁଭବ ଭିତରେ ନିଶ୍ଚିତ ହେବ

ଯେଉଁଦିନ ମୁଁ ଜ୍ଞାନ ଦିଏ, ସେହି ରାତିର ଯେଉଁ ଅନୁଭବ, ତାହା ଯାଏ ନାହିଁ । କିପରି ଯିବ ? ! ମୁଁ ଯେଉଁ ଦିନ ଜ୍ଞାନ ଦେଇଥିଲି, ସେହି ରାତିର ଯେଉଁ ଅନୁଭବ ଥିଲା ତାହା ଚିରଦିନ ପାଇଁ ଅଟେ । କିନ୍ତୁ ପୁନଃ ତୁମ କର୍ମ ଘେରି ନିଅନ୍ତି । ପୂର୍ବକର୍ମ, ଯାହା ଭୋଗିବା ପାଇଁ ବାକି ଅଛି, ସେହି 'ମାଗିବାବାଲା' ଘେରି ନିଅନ୍ତି, ସେଥିରେ ମୁଁ କ'ଣ କରିବି ?

**ପ୍ରଶ୍ନକର୍ତ୍ତା :** ଦାଦାଜୀ, କିନ୍ତୁ ଏବେ ଏତେ *ଭୋଗବଟା* (ସୁଖ ବା ଦୁଃଖର ପ୍ରଭାବ) ହେଉନାହିଁ ।

**ଦାଦାଶ୍ରୀ :** ନା । ହେଉନାହିଁ ତାହା ଅଲଗା କଥା, କିନ୍ତୁ ଯଦି ମାଗିବାବାଲା ଅଧିକ ଥିବେ, ତେବେ ତା'କୁ ଅଧିକ ଘେରି ନିଅନ୍ତି । ପାଞ୍ଚ ବାଲାକୁ ପାଞ୍ଚ, ଦୁଇ ବାଲାକୁ ଦୁଇ ଏବଂ କୋଡ଼ିଏ ବାଲାକୁ କୋଡ଼ିଏ । ମୁଁ ତ ତୁମକୁ ଶୁଦ୍ଧାତ୍ମା ପଦରେ ବସେଇ ଦେଲି, ମାତ୍ର ପୁଣି ମାଗିବାବାଲା ପରଦିନ ଆସିବେ ତେବେ ଟିକିଏ ସଫୋକେସନ୍ ହେବ ।

## ଏବେ କ'ଣ ବାକି ରହିଲା ?

ତାହା କ୍ରମିକ ବିଜ୍ଞାନ ଅଟେ ଏବଂ ଏହା ଅକ୍ରମ ବିଜ୍ଞାନ । ଏହି ଜ୍ଞାନ ତ'

ବୀତରାଗଙ୍କର ହିଁ ଅଟେ । ଜ୍ଞାନରେ ଅନ୍ତର ନାହିଁ । ମୋର ଜ୍ଞାନ ଦେବା ପରେ ତୁମକୁ ଆତ୍ମ ଅନୁଭବ ହୋଇଯିବା ପରେ, କେଉଁ କାମ ବାକି ରୁହେ ? ଜ୍ଞାନୀ ପୁରୁଷଙ୍କ 'ଆଜ୍ଞା'ର ପାଳନ । 'ଆଜ୍ଞା' ହିଁ ଧର୍ମ ଏବଂ 'ଆଜ୍ଞା' ହିଁ ତପ । ଏବଂ ମୋର ଆଜ୍ଞା ସଂସାର (ବ୍ୟବହାର)ରେ କିଞ୍ଚିତମାତ୍ର ବି ବାଧକ ହୋଇ ନଥାଏ । ସଂସାରରେ ରହି ମଧ୍ୟ ସଂସାର ସ୍ପର୍ଶ କରେ ନାହିଁ, ଏପରି ଅଟେ ଏହି ଅକ୍ରମ ବିଜ୍ଞାନ ।

ଯଦି ଏକାବତାରୀ ହେବାର ଅଛି ତେବେ ମୋର କହିବା ଅନୁଯାୟୀ ଆଜ୍ଞାରେ ଚାଲ । ତେବେ ଏହି ବିଜ୍ଞାନ ଏକାବତାରୀ ଅଟେ । ଏହି ବିଜ୍ଞାନ ଅଛି ତଥାପି ଏଠାରୁ (ଭରତ କ୍ଷେତ୍ରରୁ) ସିଧା ମୋକ୍ଷରେ ଯାଇହେବ, ଏପରି (ସମ୍ଭବ) ନୁହେଁ ।

## ମୋକ୍ଷ ମାର୍ଗରେ ଆଜ୍ଞା ହିଁ ଧର୍ମ...

ଯାହାକୁ ମୋକ୍ଷରେ ଯିବାର ଅଛି, ତା'କୁ କ୍ରିୟାର ଆବଶ୍ୟକତା ନାହିଁ । ଯାହାକୁ ଦେବଗତିରେ ଯିବାର ଅଛି, ଭୌତିକ ସୁଖର କାମନା ଅଛି, ତା'କୁ କ୍ରିୟାର ଆବଶ୍ୟକତା ଅଛି । ମୋକ୍ଷରେ ଯିବାକୁ ଥିବ, ତା'କୁ ତ' ଜ୍ଞାନ ଏବଂ ଜ୍ଞାନୀର ଆଜ୍ଞା, ଏହି ଦୁଇଟିର ହିଁ ଆବଶ୍ୟକତା ଅଛି ।

ମୋକ୍ଷ ମାର୍ଗରେ ତପ-ତ୍ୟାଗ କିଛି ମଧ୍ୟ କରିବାର ନଥାଏ । ମାତ୍ର ଯଦି ଜ୍ଞାନୀପୁରୁଷ ମିଳିଯାଆନ୍ତି ତେବେ ଜ୍ଞାନୀଙ୍କର ଆଜ୍ଞା ହିଁ ଧର୍ମ ଆଜ୍ଞା ହିଁ ତପ ଏବଂ ଏହି ଜ୍ଞାନ, ଦର୍ଶନ, ଚାରିତ୍ର ଆଉ ତପ, ଯାହାର ପ୍ରତ୍ୟକ୍ଷ ଫଳ ମୋକ୍ଷ ଅଟେ ।

## 'ଜ୍ଞାନୀ'ଙ୍କ ପାଖରେ ପଡ଼ି ରହିବ

ଜ୍ଞାନୀଙ୍କ ଉପରେ କେବେ ବି ପ୍ରେମ ଭାବ ଆସିଲା ନାହିଁ । ଜ୍ଞାନୀଙ୍କ ପ୍ରତି ପ୍ରେମଭାବ ଆସିବ ତେବେ, ତାହାଦ୍ୱାରା ସବୁ ବାଟ ଫିଟିଯିବ । ପ୍ରତ୍ୟେକ ଜନ୍ମରେ ସ୍ତ୍ରୀ-ପିଲାଙ୍କ ଛଡ଼ା ଆଉ କିଛି ହୁଏ ହିଁ ନାହିଁ ନା !

ଭଗବାନ କହିଛନ୍ତି ଯେ ଜ୍ଞାନୀପୁରୁଷଙ୍କ ପାଖରୁ ସମ୍ୟକତ୍ୱ ପ୍ରାପ୍ତ ହେବା ପରେ ଜ୍ଞାନୀପୁରୁଷଙ୍କ ପଛରେ ଲାଗି ରହିବ ।

**ପ୍ରଶ୍ନକର୍ତ୍ତା :** କେଉଁ ଅର୍ଥରେ ପଛରେ ଲାଗି ରହିବୁ ?

**ଦାଦାଶ୍ରୀ :** ପଛରେ ଲାଗି ରହିବା ଅର୍ଥାତ୍ ଏହି ଜ୍ଞାନ ମିଳିବା ପରେ ଆଉ କୌଣସି ଆରାଧନା ନଥାଏ । କିନ୍ତୁ, ଏହା ତ ଆମେ ଜାଣନ୍ତି ଯେ ଏହା ଅକ୍ରମ ଅଟେ । ଏହି ଲୋକେ ତ ଅଗଣିତ 'ଫାଇଲ୍' ନେଇ ଆସିଛନ୍ତି । ସେଥିପାଇଁ ତୁମକୁ ଫାଇଲ୍‌ମାନଙ୍କ ପାଇଁ ମୁକ୍ତ ରଖିଛି କିନ୍ତୁ ତାହର ଅର୍ଥ ଏପରି ନୁହେଁ ଯେ କାମ ପୁରା ହୋଇଗଲା । ଆଜି-କାଲି ଫାଇଲ୍ ବହୁତ ଅଛନ୍ତି, ସେଥିପାଇଁ ଯଦି ତୁମକୁ ଏଠାରେ ମୋ ପାଖରେ ରଖିବି ତେବେ ତୁମର 'ଫାଇଲ୍‌ମାନେ' ଡାକିବା ପାଇଁ ଆସିଯିବେ । ସେଥିପାଇଁ ଛାଡ଼ି ଦେଇଛି ଯେ ଘରକୁ ଯାଇ ଫାଇଲ୍‌ମାନଙ୍କର ସମଭାବରେ *ନିକାଲ୍* କର । ନହେଲେ ତ' ପୁଣି ଜ୍ଞାନୀଙ୍କ ପାଖରେ ହିଁ ପଡ଼ିରହିବା ଉଚିତ ।

ବାକି, ମୋଠାରୁ ଯଦି ପୂର୍ଣ୍ଣ ରୂପରେ ଲାଭ ନିଆଯାଉ ନାହିଁ, ତେବେ ଏହା ନିରନ୍ତର ରାତି-ଦିନ ଫୋଡ଼ି ହେଉଥିବା ଦରକାର । ଯଦିଓ ଫାଇଲ୍ ଅଛନ୍ତି ଏବଂ ଜ୍ଞାନୀପୁରୁଷ କହିଛନ୍ତି ନା', ଆଜ୍ଞା ଦେଇଛନ୍ତି ନା' ଯେ, ଫାଇଲଙ୍କର ସମଭାବରେ *ନିକାଲ୍* କରିବ, ସେହି ଆଜ୍ଞା ହିଁ ଧର୍ମ ଅଟେ ନା ? ତାହା ତ' ଆମର ଧର୍ମ ଅଟେ । କିନ୍ତୁ ଏହା ତ' ମନରେ ଖେଞ୍ଚୁଥିବା ଦରକାର ଯେ ଏଭଳି ଫାଇଲ୍ କମ୍ ହେଉ, ଯାଦ୍ୱାରା ମୁଁ ଲାଭ ଉଠାଇ ପାରିବି ।

## ତା'କୁ ତ ମହାବିଦେହ କ୍ଷେତ୍ର ସାମ୍ନାରେ ଆସିବ

ଯାହାକୁ ଶୁଦ୍ଧାତ୍ମାର ଲକ୍ଷ୍ୟ ବସି ଯାଇଥିବ, ସେ ଏଠାରେ ଭରତକ୍ଷେତ୍ରରେ ରହି ପାରିବ ହିଁ ନାହିଁ । ଯାହାକୁ ଆତ୍ମାର ଲକ୍ଷ୍ୟ ବସି ଯାଇଥିବ, ସେ ମହାବିଦେହ କ୍ଷେତ୍ରରେ ହିଁ ପହଞ୍ଚି ଯାଏ, ଏପରି ନିୟମ ଅଟେ । ଏଠି ଏହି ଦୁଷମକାଳରେ ରହି ପାରେ ହିଁ ନାହିଁ । ଏହି ଶୁଦ୍ଧାତ୍ମାର ଲକ୍ଷ୍ୟ ବସିଲା, ସେ ମହାବିଦେହ କ୍ଷେତ୍ରରେ ଗୋଟିଏ ଜନ୍ମ ଅଥବା ଦୁଇଟି ଜନ୍ମ ନେଇ, ତୀର୍ଥଙ୍କରଙ୍କ ଦର୍ଶନ କରି ମୋକ୍ଷରେ ଚାଲିଯାଏ, ଏପରି ସହଜ, ସରଳ ମାର୍ଗ ଅଟେ ଏହା ! ମୋ ଆଜ୍ଞାରେ ରହିବ । ଆଜ୍ଞା ହିଁ ଧର୍ମ ଏବଂ ଆଜ୍ଞା ହିଁ ତପ ! ସମଭାବରେ *ନିକାଲ୍* କରିବାକୁ ହେବ । ସେହି ଆଜ୍ଞା ଯେଉଁ ବତାଇଛି, ସେଥିରେ ଯେତିକି ରହିପାରିବ ସେତିକି ରୁହ, ପୂର୍ଣ୍ଣ ରୂପରେ ରହିବ ତେବେ ଭଗବାନ ମହାବୀରଙ୍କ ଦଶାରେ ରହିପାରିବ । ଯଦି ତୁମେ 'ରିୟଲ' ଏବଂ 'ରିଲେଟିଭ୍'

ଦେଖି ଚାଲିବ, ତେବେ ତୁମ ଚିତ୍ତ ଅନ୍ୟ ଜାଗାରେ ଭଟକିବ ନାହିଁ, କିନ୍ତୁ ସେହି ସମୟରେ ମନକୁ କିଛି ଆସିଲେ ତୁମେ ଦ୍ୱନ୍ଦରେ ପଡ଼ିଯାଅ ।

# (୧୪) ପାଞ୍ଚ ଆଜ୍ଞାର ମହତ୍ତ୍ୱ

## 'ଜ୍ଞାନ' ପରେ କେଉଁ ସାଧନା ?

**ପ୍ରଶ୍ନକର୍ତ୍ତା :** ଏହି 'ଜ୍ଞାନ' ପରେ ଏବେ କେଉଁ ପ୍ରକାର ସାଧନା କରିବା ଉଚିତ୍ ?

**ଦାଦାଶ୍ରୀ :** ସାଧନା ତ, ଏହି ପାଞ୍ଚ ଆଜ୍ଞାର ପାଳନ କରନ୍ତି ନା, ତାହା ହିଁ! ଏବେ ଆଉ କୌଣସି ସାଧନା ନ ଥାଏ । ଅନ୍ୟ ସବୁ ସାଧନା ବନ୍ଧନକାରକ ଅଟେ । ଏହି ପାଞ୍ଚ ଆଜ୍ଞା ମୁକ୍ତ କରାଇବ ।

## ସମାଧି କରାଏ, ଏପରି ଆଜ୍ଞା

**ପ୍ରଶ୍ନକର୍ତ୍ତା :** ଏହି ଯେଉଁ ପାଞ୍ଚ ଆଜ୍ଞା, ଏହାଠୁ ଉପରେ ଆଉ କିଛି ଅଛି ?

**ଦାଦାଶ୍ରୀ :** ପାଞ୍ଚ ଆଜ୍ଞା ତୁମ ପାଇଁ ଏକ ବାଡ଼ ଅଟେ, ଯାଦ୍ୱାରା ତୁମର ମାଲ୍ ଭିତରୁ କେହି ଚୋରାଇ ନ ନେଇଯାଉ । ଏହି ବାଡ଼ ରଖିବା ଦ୍ୱାରା ତୁମ ଭିତରେ, ମୁଁ ଯାହା ଦେଇଛି ତାହା ଏକ୍‌ଜାକ୍ଟ, ଯେପରି ଅଛି ସେହିପରି ରହିବ, ଆଉ ଯଦି ବାଡ଼ ଢିଲା ହୋଇଯିବ ତେବେ କେହି ଭିତରେ ପଶି ବିଗାଡ଼ି ଦେବ । ସେତେବେଳେ ପୁଣି ମୋତେ ରିପେୟାର କରିବା ପାଇଁ ଆସିବାକୁ ପଡ଼ିବ । ସେଥିପାଇଁ ଯେପର୍ଯ୍ୟନ୍ତ ଏହି ପାଞ୍ଚ ଆଜ୍ଞାରେ ରହିବ, ସେପର୍ଯ୍ୟନ୍ତ ନିରନ୍ତର ସମାଧିର ଗ୍ୟାରେଣ୍ଟି ମୁଁ ଦେଉଛି ।

ମୁଁ ପାଞ୍ଚ ବାକ୍ୟ ତୁମକୁ ପ୍ରୋଟେକ୍‌ଶନ(ସୁରକ୍ଷା) ପାଇଁ ଦିଏ । ଏହି ଜ୍ଞାନ ତ' ମୁଁ ତୁମକୁ ଦେଲି ଏବଂ 'ଭେଦଜ୍ଞାନ' ଦ୍ୱାରା 'ଅଲଗା' ମଧ୍ୟ କଲି । କିନ୍ତୁ ଏବେ ତାହା 'ଅଲଗା' ହିଁ ରହୁ, ସେଥିପାଇଁ ପ୍ରୋଟେକ୍‌ଶନ ଦିଏ କାରଣ ଏହି କାଳ, ଯାହା କଳିଯୁଗ ଅଟେ, ଏହି କଳିଯୁଗବାଲା ତା'କୁ ଲୁଟି ନ ନିଅନ୍ତୁ । 'ବୋଧବୀଜ' ଅଙ୍କୁରିତ ହେଲାପରେ ପାଣି ଇତ୍ୟାଦି ସବୁ ଛିଞ୍ଚିବାକୁ ତ ହେବ ନା ? ବାଡ଼ ଦେବାକୁ ପଡ଼ିବ ନା ନାହିଁ ?

## ଦୃଢ଼ 'ନିଶ୍ଚୟ' ହିଁ ଆଜ୍ଞାର ପାଳନ କରାଇବ

ଦାଦାଜୀଙ୍କ ଆଜ୍ଞାର ପାଳନ କରିବାର ଅଛି, ଏହା ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ମୋ ଆଜ୍ଞା ପାଳନ କରିବାର 'ନିଶ୍ଚୟ' କରିବା ଦରକାର । ତୁମକୁ ଏହା ଦେଖିବାର ନାହିଁ ଯେ ଆଜ୍ଞାର ପାଳନ ହେଉଛି କି ନାହିଁ । ଆଜ୍ଞାର ପାଳନ ଯେତିକି ହୋଇପାରୁଛି ସେତିକି ଠିକ୍, କିନ୍ତୁ ଆମକୁ 'ନିଶ୍ଚୟ' କରିବା ଦରକାର ଯେ ଆଜ୍ଞାର ପାଳନ କରିବାର ଅଛି ।

**ପ୍ରଶ୍ନକର୍ତ୍ତା :** ଅଳ୍ପ-ବହୁତ ପାଳନ ହେଲେ, ସେଥିରେ କିଛି ଅସୁବିଧା ନାହିଁ ତ ?

**ଦାଦାଶ୍ରୀ :** 'ଅସୁବିଧା ନାହିଁ', ଏପରି ନୁହେଁ । ଆମେ 'ନିଶ୍ଚୟ' କରିବା ଯେ ଆଜ୍ଞାର ପାଳନ କରିବାର ହିଁ ଅଛି । ସକାଳୁ ହିଁ 'ନିଶ୍ଚୟ' କରିବ ଯେ 'ପାଞ୍ଚ ଆଜ୍ଞାରେ ହିଁ ରହିବାର ଅଛି, ପାଳନ କରିବାର ହିଁ ଅଛି ।' 'ନିଶ୍ଚୟ' କରିବା କ୍ଷଣି ମୋ ଆଜ୍ଞାରେ ଆସିଗଲ, ମୋତେ ଏତିକି ହିଁ ଦରକାର । ପାଳନ ହୋଇପାରୁ ନାହିଁ, ତାହାର କଜେଜ୍ (କାରଣ) ମୋତେ ଜଣାଅଛି । ଆମକୁ ପାଳିବାର ଅଛି, ଏପରି 'ନିଶ୍ଚୟ' ହିଁ କେବଳ କରିବାର ଅଛି ।

ଆମ ଜ୍ଞାନଦ୍ୱାରା ତ ମୋକ୍ଷ ନିଶ୍ଚିତ ହେବ । ଯଦି କେହି ଆଜ୍ଞାରେ ରହିବ ତେବେ ତା'ର ମୋକ୍ଷ ହେବ, ଏଥିରେ ଦ୍ୱିମତ ନାହିଁ । ପୁଣି କେହି ପାଳୁ ନଥିବ, କିନ୍ତୁ ଯଦି ସେ ଜ୍ଞାନ ନେଇଛି, ତେବେ ତାହା ଅଙ୍କୁରିତ ନ ହୋଇ ରହିବ ନାହିଁ । ଲୋକେ ମୋତେ କୁହନ୍ତି, ଯେ 'ଜ୍ଞାନ ପାଇଥିବା କିଛି ଲୋକ ଆଜ୍ଞାର ପାଳନ କରୁ ନାହାନ୍ତି, ସେମାନଙ୍କର କ'ଣ ?' ମୁଁ କହିଲି, 'ତୋତେ ଏହା ଦେଖିବାର ଆବଶ୍ୟକତା ନାହିଁ, ଏହା ମୋତେ ଦେଖିବାର ଆବଶ୍ୟକତା ଅଛି । ଜ୍ଞାନ ମୋ ଠାରୁ ନେଇ ଯାଇଛନ୍ତି ନା ! ତୋର କ୍ଷତି ତ' ହୋଇ ନାହିଁ ନା ?' କାହିଁକିନା ପାପ ଭସ୍ମୀଭୂତ ନହୋଇ ରୁହେ ନାହିଁ । ମୋର ଏହି ପାଞ୍ଚ ବାକ୍ୟରେ ରହିବ ତେବେ ପହଞ୍ଚି ପାରିବ । ମୁଁ ନିରନ୍ତର ପାଞ୍ଚବାକ୍ୟରେ ହିଁ ରୁହେ ଏବଂ ମୁଁ ଯେଉଁଥିରେ ରୁହେ, ସେହି 'ଦଶା'(ସ୍ଥିତି) ତୁମକୁ ଦେଇଛି । ଆଜ୍ଞାରେ ରହିଲେ କାମ ହେବ । ନିଜ ସମଝ୍(ବୁଦ୍ଧି)ରେ ଲକ୍ଷେ ଜନ୍ମ ମୁଣ୍ଡ ପିଟିଲେ ମଧ୍ୟ କିଛି ହେବାର ନାହିଁ । କିନ୍ତୁ ଏମାନେ ତ ଆଜ୍ଞା ବି ନିଜ ବୁଦ୍ଧି ଅନୁସାରେ ପାଳନ

କରନ୍ତି । ପୁଣି, ଆଜ୍ଞା ବି ବୁଝନ୍ତି ନିଜ ବୁଦ୍ଧି ଅନୁଯାୟୀ ନା ! ସେଥିପାଇଁ ସେଠାରେ ଟିକେ ଟିକେ ଲିକେଜ୍ ହେଉଥାଏ । ତଥାପି ଆଜ୍ଞା ପାଳନ ପଛରେ ତା'ର ନିଜର ଭାବ ଏପରି ହିଁ ଥାଏ ଯେ 'ଆଜ୍ଞା ପାଳନ କରିବାର ହିଁ ଅଛି ।' ଏଥିପାଇଁ ଜାଗୃତି ଦରକାର ।

ଆଜ୍ଞା ପାଳନ କରିବା ଭୁଲିଗଲେ ପ୍ରତିକ୍ରମଣ କରିବ । ମଣିଷ ଅଟନ୍ତି, ଭୁଲି ତ' ଯିବା । କିନ୍ତୁ ଭୁଲିଯିବା ପରେ ପ୍ରତିକ୍ରମଣ କରିବ ଯେ 'ହେ ଦାଦାଜୀ, ଏହି ଦୁଇ ଘଣ୍ଟା ଭୁଲିଗଲି, ଆପଣଙ୍କ ଆଜ୍ଞା ଭୁଲିଗଲି । କିନ୍ତୁ ମୋତେ ତ' ଆଜ୍ଞା ପାଳନ କରିବାର ହିଁ ଅଛି । ମୋତେ କ୍ଷମା କରନ୍ତୁ ।' ତେବେ ପୂର୍ବର ସବୁ କିଛି କ୍ଷମା । ଶହେରୁ ଶହେ ମାର୍କ ପୁରା । ଅର୍ଥାତ ଜୀମ୍ମେଦାରୀ(ଉତ୍ତରଦାୟୀତ୍ୱ) ରହିଲା ନାହିଁ ।ଆଜ୍ଞାରେ ଆସିଗଲେ ତା'କୁ ପୁରା ଦୁନିଆ ଛୁଇଁ ପାରିବ ନାହିଁ । ମୋ ଆଜ୍ଞାର ପାଳନ କଲେ ତୁମକୁ କିଛି ସ୍ୱର୍ଶ କରିବ ନାହିଁ । ତେବେ କ'ଣ ଆଜ୍ଞା ଦେବାବାଲାକୁ ସ୍ୱର୍ଶ କରିବ ? ନା, କାରଣ ପରହେତୁ ପାଇଁ ଅଟେ, ଏଥିପାଇଁ ତାଙ୍କୁ ସ୍ୱର୍ଶ କରେ ନାହିଁ ଏବଂ ଡିଜୋଲ୍‌ଭ ହୋଇଯାଏ ।

## ଏହା ତ' ଅଟେ ଭଗବାନଙ୍କର ଆଜ୍ଞା ! ! !

ଦାଦାଜୀଙ୍କ ଆଜ୍ଞାର ପାଳନ କରିବା ଅର୍ଥାତ୍ ତାହା 'ଏ.ଏମ୍. ପଟେଲ'ଙ୍କ ଆଜ୍ଞା ନୁହେଁ । ସ୍ୱୟଂ 'ଦାଦା ଭଗବାନ'ଙ୍କର, ଯିଏ ଚଉଦ ଲୋକର ନାଥ ଅଟନ୍ତି, ତାଙ୍କର ଆଜ୍ଞା ଅଟେ । ତାହାର ଗ୍ୟାରେଣ୍ଟି ଦେଉଛି । ଏହା ତ' ମୋ ମାଧ୍ୟମରେ ଏହି ସବୁକଥା ବାହାରିଛି । ଏଥିପାଇଁ ତୁମକୁ ସେହି ଆଜ୍ଞାର ପାଳନ କରିବାର ଅଛି । 'ମୋ ଆଜ୍ଞା' ନୁହେଁ, ଏହା ଦାଦା ଭଗବାନଙ୍କ ଆଜ୍ଞା ଅଟେ । ମୁଁ ମଧ୍ୟ ସେହି ଭଗବାନଙ୍କ ଆଜ୍ଞାରେ ରହୁଛି ନା !

**ଜୟ ସଚ୍ଚିଦାନନ୍ଦ**

# ନିତ୍ୟ କ୍ରମ

## ପ୍ରାତଃ ବିଧି

**(ପ୍ରତିଦିନ ସକାଳେ ଥରେ କରନ୍ତୁ)**

**(ଶୁଦ୍ଧାତ୍ମାର ଲକ୍ଷ୍ୟ ସହ କୁହନ୍ତୁ)**

- ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ନମସ୍କାର କରୁଛି । (୫)
- ବାତ୍ସଲ୍ୟମୂର୍ତ୍ତି 'ଦାଦା ଭଗବାନ'ଙ୍କୁ ନମସ୍କାର କରୁଛି । (୫)
- ପ୍ରାପ୍ତ ମନ-ବଚନ-କାୟା ଦ୍ୱାରା ଏହି ସଂସାରର କୌଣସି ବି ଜୀବକୁ କିଞ୍ଚିତ୍‌ମାତ୍ର ବି ଦୁଃଖ ନ ହେଉ, ନ ହେଉ, ନ ହେଉ । (୫)
- କେବଳ ଶୁଦ୍ଧାତ୍ମାନୁଭବ ବ୍ୟତୀତ ଏହି ସଂସାରର କୌଣସି ବିନାଶୀ ଜିନିଷ ମୋତେ ଦରକାର ନାହିଁ । (୫)
- ପ୍ରକଟ ଜ୍ଞାନୀପୁରୁଷ ଦାଦା ଭଗବାନଙ୍କ ଆଜ୍ଞାରେ ହିଁ ନିରନ୍ତର ରହିବା ପାଇଁ ପରମ ଶକ୍ତି ପ୍ରାପ୍ତ ହେଉ, ପ୍ରାପ୍ତ ହେଉ, ପ୍ରାପ୍ତ ହେଉ । (୫)
- ଜ୍ଞାନୀପୁରୁଷ 'ଦାଦା ଭଗବାନ'ଙ୍କ ବୀତରାଗ ବିଜ୍ଞାନର ଯଥାର୍ଥ ରୂପରେ,ସମ୍ପୂର୍ଣ୍ଣ-ସର୍ବାଙ୍ଗ ରୂପରେ କେବଳଜ୍ଞାନ, କେବଳଦର୍ଶନ ଏବଂ କେବଳଚାରିତ୍ରରେ ପରିଣମନ ହେଉ, ପରିଣମନ ହେଉ, ପରିଣମନ ହେଉ । (୫)



## ନମସ୍କାର ବିଧି

**(ପ୍ରତିଦିନ ଥରେ କରନ୍ତୁ)**

- ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ବର୍ତ୍ତମାନ ମହାବିଦେହ କ୍ଷେତ୍ରରେ ବିଚରିତ ତୀର୍ଥଙ୍କର ଭଗବାନ ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୪୦)

- ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ବର୍ତ୍ତମାନ ମହାବିଦେହ କ୍ଷେତ୍ର ତଥା ଅନ୍ୟ କ୍ଷେତ୍ରରେ ବିଚରିତ ଓଁ ପରମେଷ୍ଠି ଭଗବନ୍ତଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ବର୍ତ୍ତମାନ ମହାବିଦେହ କ୍ଷେତ୍ର ତଥା ଅନ୍ୟ କ୍ଷେତ୍ରରେ ବିଚରିତ ପଞ୍ଚ ପରମେଷ୍ଠି ଭଗବନ୍ତଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ବର୍ତ୍ତମାନ ମହାବିଦେହ କ୍ଷେତ୍ର ତଥା ଅନ୍ୟ କ୍ଷେତ୍ରରେ ବିହରମାନ ତୀର୍ଥଙ୍କର ସାହିବଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ବୀତରାଗ ଶାସନ ଦେବୀ-ଦେବତାଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ନିଷ୍ପକ୍ଷପାତୀ ଶାସନ ଦେବୀ-ଦେବତାଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ଚବିଶ ତୀର୍ଥଙ୍କର ଭଗବନ୍ତଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ଶ୍ରୀ କୃଷ୍ଣ ଭଗବାନଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ଭରତ କ୍ଷେତ୍ରରେ ବର୍ତ୍ତମାନ ବିଚରିତ ସର୍ବଜ୍ଞ ଶ୍ରୀ ଦାଦା ଭଗବାନଙ୍କୁ ନିଶ୍ଚୟ ସହ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ଦାଦା ଭଗବାନଙ୍କ ସର୍ବ ସମକିତଧାରୀ ମହାତ୍ମାମାନଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ସାରା ବ୍ରହ୍ମାଣ୍ଡର ସମସ୍ତ ଜୀବଙ୍କ ରିୟଲ ସ୍ୱରୂପକୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । (୫)
- ରିୟଲ ସ୍ୱରୂପ ହିଁ ଭଗବତ୍ ସ୍ୱରୂପ ଅଟେ, ଏଥିପାଇଁ ସାରା ବିଶ୍ୱକୁ ଭଗବତ ସ୍ୱରୂପରେ ଦର୍ଶନ କରୁଛି । (୫)
- ରିୟଲ ସ୍ୱରୂପ ହିଁ ଶୁଦ୍ଧାତ୍ମ ସ୍ୱରୂପ ଅଟେ, ଏଥିପାଇଁ ସାରା ବିଶ୍ୱକୁ ଶୁଦ୍ଧାତ୍ମ ସ୍ୱରୂପରେ ଦର୍ଶନ କରୁଛି । (୫)

- ରିୟଲ ସ୍ୱରୂପ ହିଁ ତତ୍ତ୍ୱ ସ୍ୱରୂପ ଅଟେ, ଏଥିପାଇଁ ସାରା ବିଶ୍ୱକୁ ତତ୍ତ୍ୱ ଜ୍ଞାନ ରୂପରେ ଦର୍ଶନ କରୁଛି । (୫)

(ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀଙ୍କୁ ପରମ ପୂଜ୍ୟ ଶ୍ରୀ ଦାଦା ଭଗବାନଙ୍କ ମାଧ୍ୟମରେ ପ୍ରତ୍ୟକ୍ଷ ନମସ୍କାର ପହଞ୍ଚିଥାଏ । ବନ୍ଧନୀରେ ଲେଖାଯାଇଥିବା ସଂଖ୍ୟାନୁସାରେ ପ୍ରତିଦିନ ସେତିକି ଥର କୁହନ୍ତୁ ।)



# ନଅ କଲମ

୧. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ(ଆହତ ନ ହୁଏ) ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ, ଏପରି ସ୍ୟାଦବାଦ ବାଣୀ, ସ୍ୟାଦବାଦ ବର୍ତ୍ତନ(ବ୍ୟବହାର) ଏବଂ ସ୍ୟାଦବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୨. ହେ ଦାଦା ଭଗବାନ ! ମୋତେ, କୌଣସି ବି ଧର୍ମର କିଞ୍ଚିତମାତ୍ର ବି ପ୍ରମାଣ(ମର୍ଯ୍ୟାଦା) ନ ଦୁଭେ, ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ, କୌଣସି ଧର୍ମର କିଞ୍ଚିତମାତ୍ର ବି ପ୍ରମାଣ ନ ଦୁଭାଯାଏ ଏପରି ସ୍ୟାଦବାଦ ବାଣୀ, ସ୍ୟାଦବାଦ ବର୍ତ୍ତନ ଏବଂ ସ୍ୟାଦବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୩. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଉପଦେଶକ ସାଧୁ, ସାଧ୍ୱୀ ଅବା ଆଚାର୍ଯ୍ୟଙ୍କର ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୪. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି କିଞ୍ଚିତମାତ୍ର ବି ଅଭାବ, ତିରସ୍କାର କେବେ ବି ନ କରେ, ନ କରାଏ, ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।

୫. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ସହ କେବେ ବି କଠୋର ଭାଷା, ତଂତିଲି ଭାଷା ନ କୁହେ, ନ କୁହାଏ ଅଥବା କହିବା ପାଇଁ ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।

କେହି କଠୋର ଭାଷା, ତଂତିଲି ଭାଷା କୁହେ ତେବେ ମୋତେ ମୃଦୁ-ଋଜୁ ଭାଷା କହିବା ପାଇଁ ପରମଶକ୍ତି ଦିଅନ୍ତୁ ।

୬. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି ସ୍ତ୍ରୀ, ପୁରୁଷ ଅଥବା ନପୁଂସକ, କୌଣସି ବି ଲିଙ୍ଗଧାରୀ ହେଉ, ତେବେ ତାଙ୍କ ସମ୍ବନ୍ଧରେ କିଞ୍ଚିତମାତ୍ର ବି ବିଷୟ-ବିକାର ସମ୍ବନ୍ଧି ଦୋଷ, ଇଚ୍ଛା, ଚେଷ୍ଟା ଅଥବା ବିଚାର ସମ୍ବନ୍ଧି ଦୋଷ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ ନିରନ୍ତର ନିର୍ବିକାର ରହିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୭. ହେ ଦାଦା ଭଗବାନ ! ମୋତେ, କୌଣସି ବି ରସରେ ଲୁବ୍ଧତା ନ ହେଉ, ଏପରି ଶକ୍ତି ଦିଅନ୍ତୁ ।

ସମରସୀ ଆହାର ନେବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୮. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର ପ୍ରତ୍ୟକ୍ଷ ଅଥବା ପରୋକ୍ଷ, ଜୀବିତ ଅଥବା ମୃତ, କାହାରି କିଞ୍ଚିତମାତ୍ର ବି ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ ଏପରି ପରମ ଶକ୍ତି ଦିଅନ୍ତୁ ।

୯. ହେ ଦାଦା ଭଗବାନ ! ମୋତେ, ଜଗତ କଲ୍ୟାଣ କରିବାରେ ନିମିତ୍ତ ହେବାପାଇଁ ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

(ଏତିକି ତୁମକୁ ଦାଦା ଭଗବାନଙ୍କ ପାଖରେ ମାଗିବାର ଅଛି । ଏହା ପ୍ରତିଦିନ ଯନ୍ତ୍ରବତ୍ ପଢ଼ିବାର ଜିନିଷ ନୁହେଁ, ହୃଦୟରେ ରଖିବାର ଜିନିଷ ଅଟେ । ଏହା ପ୍ରତିଦିନ ଉପଯୋଗପୂର୍ବକ ଭାବନା କରିବାର ଜିନିଷ ଅଟେ । ଏତିକି ପାଠରେ ସମସ୍ତ ଶାସ୍ତ୍ରର ସାର ଆସିଯାଏ ।)



# ଜ୍ଞାନ ସାକ୍ଷାତ୍କାର ପ୍ରାପ୍ତି ହେତୁ ବ୍ୟବହାର ବିଧି
## (ପ୍ରତିଦିନ ଥରେ ପଢ଼ିବେ)

ପ୍ରକଟ 'ଜ୍ଞାନୀପୁରୁଷ' ଦାଦା ଭଗବାନଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି, ନମସ୍କାର କରୁଛି, ନମସ୍କାର କରୁଛି ।

ପ୍ରକଟ 'ଜ୍ଞାନୀପୁରୁଷ' ଦ୍ୱାରା ଯେଉଁମାନଙ୍କୁ 'ସତ୍' ପ୍ରାପ୍ତ ହୋଇଛି, ସେହି 'ସତ୍ପୁରୁଷ'ମାନଙ୍କୁ ଅତ୍ୟନ୍ତ ଭକ୍ତିରେ ନମସ୍କାର କରୁଛି, ନମସ୍କାର କରୁଛି, ନମସ୍କାର କରୁଛି ।

ସମସ୍ତ ନିଷ୍ପକ୍ଷପାତୀ ଦେବୀ-ଦେବତାଙ୍କୁ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି, ନମସ୍କାର କରୁଛି, ନମସ୍କାର କରୁଛି ।

ହେ ପ୍ରକଟ ଜ୍ଞାନୀପୁରୁଷ ତଥା ହେ ସତ୍ପୁରୁଷଗଣ ଆଜିର ଏହି ଜ୍ୱଳନ୍ତ ଅଗ୍ନିରେ ଜଳୁଥିବା ଜଗତର କଲ୍ୟାଣ କରନ୍ତୁ, କଲ୍ୟାଣ କରନ୍ତୁ, କଲ୍ୟାଣ କରନ୍ତୁ ଏବଂ ସେଥିରେ ମୁଁ ନିମିତ୍ତ ହୁଏ ଏପରି ଶୁଦ୍ଧ ଭାବନା ସହ ଆପଣଙ୍କ ସମ୍ମୁଖରେ ମନ-ବଚନ-କାୟାର ଏକାଗ୍ରତାରେ ପ୍ରାର୍ଥନା ବିଧି କରୁଛି, ଯାହା ଆତ୍ୟନ୍ତିକ ରୂପରେ ସଫଳ ହେଉ, ସଫଳ ହେଉ, ସଫଳ ହେଉ ।

ହେ ଦାଦା ଭଗବାନ! ଆପଣଙ୍କ ଶୁଦ୍ଧ ଜ୍ଞାନରେ ଅବଲୋକନ ହୋଇଥିବା ଏବଂ ଆପଣଙ୍କ ଶ୍ରୀମୂଖରୁ ପ୍ରକଟ ହୋଇଥିବା ଶୁଦ୍ଧ ଜ୍ଞାନସୂତ୍ର ନିମ୍ନ ପ୍ରକାର ଅଟେ:-

"ମନ-ବଚନ-କାୟାର *ତମାମ*(ସମସ୍ତ) ଲେପାୟମାନ ଭାବ ଯେଉଁ ଅଛି, ତାହାଠାରୁ 'ଶୁଦ୍ଧଚେତନ' ସର୍ବଦା ନିର୍ଲେପ ହିଁ ଅଟେ ।" (୩)

"ମନ-ବଚନ-କାୟାର *ତମାମ* ସଙ୍ଗୀ କ୍ରିୟାରୁ 'ଶୁଦ୍ଧଚେତନ' ବିଲ୍‌କୁଲ ଅସଙ୍ଗ ହିଁ ଅଟେ ।" (୩)

"ମନ-ବଚନ-କାୟାର ଅଭ୍ୟାସ ଏବଂ ସେମାନଙ୍କର ସ୍ୱଭାବକୁ 'ଶୁଦ୍ଧଚେତନ' ଜାଣେ ଏବଂ ନିଜର ସ୍ୱଭାବକୁ ମଧ 'ଶୁଦ୍ଧଚେତନ' ଜାଣେ । କାରଣ ସେ ସ୍ୱ-ପର ପ୍ରକାଶକ ଅଟେ ।" (୩)

"ଆହାରୀ ଆହାର କରେ ଏବଂ ନିରାହାରୀ 'ଶୁଦ୍ଧଚେତନ' କେବଳ ତା'କୁ ଜାଣେ । (୩)

"ସ୍ଥୂଳ ସଂଯୋଗ, ସୂକ୍ଷ୍ମ ସଂଯୋଗ, ବାଣୀର ସଂଯୋଗ ପର ଅଟେ ଏବଂ ପରାଧୀନ ଅଟେ, ଏବଂ 'ଶୁଦ୍ଧଚେତନ' ତାହାର କେବଳ ଜ୍ଞାତା-ଦ୍ରଷ୍ଟା ଅଟେ ।" (୩)

"ସ୍ଥୂଳତମରୁ ସୂକ୍ଷ୍ମତମ ପର୍ଯ୍ୟନ୍ତ *ତମାମ* ସଂସାରୀ ଅବସ୍ଥାର 'ଶୁଦ୍ଧଚେତନ' କେବଳ ଜ୍ଞାତା-ଦ୍ରଷ୍ଟା ଅଟେ, ଟଙ୍କୋତ୍କୀର୍ଣ୍ଣ ଅଟେ, ଆନନ୍ଦ ସ୍ୱରୁପ ଅଟେ ।" (୩)

"ମନ, ବଚନ, କାୟାର ଅବସ୍ଥା ମାତ୍ର ପ୍ରକୃତିର ରଚନା (Only Scientific Circumstantial Evidence) ଅଟେ, ଯାହାର କୋଉ ବୋପା ବି ରଚିବାବାଲା ନାହିଁ ଏବଂ ତାହା 'ବ୍ୟବସ୍ଥିତ' ଅଟେ ।" (୩)

"ନିଶ୍ଚେତନ-ଚେତନର ଗୋଟିଏ ବି ଗୁଣ 'ଶୁଦ୍ଧଚେତନ'ରେ ନାହିଁ ଏବଂ 'ଶୁଦ୍ଧଚେତନ'ର ଗୋଟିଏ ବି ଗୁଣ ନିଶ୍ଚେତନ-ଚେତନରେ ନାହିଁ । ଦୁହେଁ ସର୍ବଦା ଭିନ୍ନ-ଭିନ୍ନ ହିଁ ଅଟନ୍ତି । (୩)

"ଚଞ୍ଚଳ ଭାଗର ଯେତେ ବି ଭାବ ଅଛି, ସେସବୁ ନିଶ୍ଚେତନ-ଚେତନର ଭାବ ଅଟେ ଏବଂ 'ଶୁଦ୍ଧଚେତନ' ଯାହା ଅଚଳ ଅଟେ, ତାହାର ଭାବ ନାହିଁ ।" (୩)

ହେ ପ୍ରଭୁ ! ଭ୍ରାନ୍ତିବଶତଃ ମୋତେ 'ଶୁଦ୍ଧଚେତନ'ର ଭାବ ଉପରୋକ୍ତ ସୂତ୍ର ଅନୁସାରେ 'ଏହା' ଅଟେ, ଏପରି ଯଥାର୍ଥ ରୂପରେ, ଯେମିତି କୁ ସେମିତି, ବୁଝାପଡ଼ିଲା ନାହିଁ । କାରଣ ନିଷ୍ପକ୍ଷପାତୀ ଭାବରେ ମୋତେ ନିଜେ ନିଜର ନିରୀକ୍ଷଣ କରିବାରୁ ବୁଝାପଡ଼ିଲା ଯେ ମୋ'ଠାରୁ ମୋର ଅନ୍ତରକ୍ଲେଶ ତଥା କ୍ଲେଶ-ଅଶାନ୍ତି(ଅବିଶ୍ରାନ୍ତତା / Restless) ଯାଇନାହିଁ । ହେ ପ୍ରଭୁ ! ଏଥିପାଇଁ ମୋର ଅନ୍ତରକ୍ଲେଶର ଶମନ (ଶାନ୍ତ କରାଇବା) ହେତୁ ମୋତେ ପରମ ଶକ୍ତି ଦିଅନ୍ତୁ । ଏବେ ମୋର ଏହି ଶୁଦ୍ଧ ଭାବକୁ ଯେମିତି କୁ ସେମିତି ବୁଝିବା ଛଡ଼ା ମୋତେ ଅନ୍ୟ କୌଣସି କାମନା ନାହିଁ । ମୁଁ କେବଳ ମୋକ୍ଷକାମୀ ଅଟେ । ସେଥିପାଇଁ ମୋର ଦୃଢ଼ ଅଭିଳାଶା ଅଛି ଯେ ମୁଁ 'ସତ୍‌ପୁରୁଷଙ୍କ ବିନୟ'ରେ ଏବଂ 'ଜ୍ଞାନୀପୁରୁଷଙ୍କ ପରମ ବିନୟ'ରେ ରହି, ମୁଁ କିଛି ମଧ୍ୟ ଜାଣି ନାହିଁ, ଏପରି ଭାବରେ ହିଁ ରହେ ।

ଉପରୋକ୍ତ ଜ୍ଞାନସୁତ୍ର ଅନୁସାରେ ଶୁଦ୍ଧ ଭାବ ମୋ ଶ୍ରଦ୍ଧାରେ ଏବଂ ଜ୍ଞାନରେ ଆସିପାରୁ ନାହିଁ । ଯଦି ସେ ସବୁ ଭାବ ମୋର ଦୃଢ଼ ଶ୍ରଦ୍ଧାରେ ଆସିବ ତେବେ ମୁଁ ଅନୁଭବ କରିବି ଯେ ମୋତେ ଯଥାର୍ଥ ସମ୍ୟକଦର୍ଶନ ହୋଇଛି । ଏହା ପାଇଁ ମୁଖ୍ୟତଃ ଦୁଇଟି ଜିନିଷର ଆବଶ୍ୟକତା ଅଛି ।

୧) 'ମୁଁ ପରମ-ସତ୍ୟ ଜାଣିବାର ହିଁ କାମୀ ଅଟେ ।' ଏହି ଭାବ-ନିଷ୍ଠା ।

୨) 'ପରମ-ସତ୍ୟ' 'ଜ୍ଞାନୀପୁରୁଷ'ଙ୍କ ଆଜ୍ଞାର ସମ୍ପୂର୍ଣ୍ଣ ଆରାଧନା ଦ୍ୱାରା ହିଁ ପ୍ରାପ୍ତ ହୁଏ ।

'ଜ୍ଞାନୀପୁରୁଷ'ଙ୍କ ପ୍ରତ୍ୟକ୍ଷ ଯୋଗ ବିନା ଅନ୍ୟ କିଛି ବି ମାର୍ଗ ନାହିଁ । ଏଥିପାଇଁ ମୁଁ ପ୍ରତ୍ୟକ୍ଷ 'ଜ୍ଞାନୀପୁରୁଷ'ଙ୍କ ସନ୍ଧାନରେ ରହେ ଏବଂ ତାଙ୍କର ଯୋଗ ପ୍ରାପ୍ତ ହେବା ପରେ ମୁଁ ତାଙ୍କର ହିଁ ଆଜ୍ଞାର ଆରାଧନାରେ ରହିବାର ଦୃଢ଼ ନିର୍ଣ୍ଣୟ-ନିଶ୍ଚୟ କରୁଛି । ମୋର ଏହି କାମନା ସଫଳ ହେଉ, ସଫଳ ହେଉ, ସଫଳ ହେଉ ।



# दादा भगवान फाउन्डेशन के द्वारा प्रकाशित पुस्तकें

१. ज्ञानी पुरुष की पहचान
२. सर्व दु :खो से मुक्ति
३. कर्म का सिद्धांत
४. आत्मबोध
५. मैं कौन हूँ ?
६.वर्तमान तीर्थकंर श्री सीमंधर स्वामी
७.भुगते उसी की भूल
८. एडजस्ट एवरीव्हेयर
९. टकराव टालिए
१०. हुआ सो न्याय
११. चिंता
१२. क्रोध
१३. प्रतिक्रमण
१४. दादा भगवान कौन ?
१५. पैसों का व्यवहार
१६. अंत : करण का स्वरुप
१७. जगत कर्ता
१८. त्रिमंत्र
१९. भावना से सुधरे जन्मोंजन्म
२०. माता-पिता और बच्चों का व्यवहार
२१. प्रेम
२२. समझ से प्राप्त ब्रह्मचर्य
२३. दान
२४. मानव धर्म
२५. सेवा-परोपकार
२६. मृत्यु समय, पहले और पश्चात
२७. निजदोष दर्शन से...निर्दोष
२८. पति-पत्नि का दिव्य व्यवहार
२९. क्लेश रहित जीवन
३०. गुरु-शिष्य
३१. अहिंसा
३२. सत्य-असत्य के रहस्य
३३. चमत्कार
३४. पाप-पुण्य
३५. वाणी,व्यवहार में...
३६. कर्म का विज्ञान
३७. आप्तवाणी - १
३८. आप्तवाणी - २
३९. आप्तवाणी - ३
४०. आप्तवाणी - ४
४१. आप्तवाणी - ५
४२. आप्तवाणी - ६
४३. आप्तवाणी - ७
४४. आप्तवाणी - ८
४५.आप्तवाणी - ९
४६.आप्तवाणी - १३(पूर्वार्ध)
४५. समझ से प्राप्त ब्रह्मचर्य (पूर्वार्ध-उत्तरार्ध)

• ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ୭୨ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ **www.dadabhagwan.org** ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।

• ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ 'ଦାଦାବାଣୀ' ମାଗାଜିନ୍ ପ୍ରକାଶିତ ହେଉଛି ।

**ଓଡ଼ିଆ ପୁସ୍ତକ** : ୧. ଆତ୍ମସାକ୍ଷାତ୍କାର ୨. ଘର୍ଷଣ ଟାଳନ୍ତୁ ୩. ମୁଁ କିଏ ?
୪. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର ୫. ଚିନ୍ତା ୬. ମାନବ ଧର୍ମ
୭. କ୍ରୋଧ ୮. ଯାହା ହେଲା ତାହା ନ୍ୟାୟ

## ପ୍ରାପ୍ତିସ୍ଥାନ

## ଦାଦା ଭଗବାନ ପରିବାର


**ଅଡ଼ାଲଜ** : ତ୍ରିମନ୍ଦିର, ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-୩୮୨୪୨୧, ଫୋନ-(୦୭୯)୩୯୮୩୦୧୦୦

**ରାଜକୋଟ**: ତ୍ରିମନ୍ଦିର, ଅହମଦାବାଦ-ରାଜକୋଟ ହାଇୱେ, ତରଘଡ଼ିୟା ଚୋକଡ଼ି(ସର୍କଲ), ପୋ-ମାଲିୟାସଣ, ଜିଲ୍ଲା-ରାଜକୋଟ, ଫୋନ-୯୨୭୪୧୧୧୩୯୩

**ଭୁଜ୍** : ତ୍ରିମନ୍ଦିର, ହିଲ୍ ଗାର୍ଡେନ ପଛ,ଏୟାରପୋର୍ଟ ରୋଡ଼, (୦୨୮୩୨) ୨୯୦୧୨୩

**ଗୋଧ୍ରା** : ତ୍ରିମନ୍ଦିର, ଭାମେୟା ଗାଁ, ଏଫ୍ସିଆଇ ଗୋଡାଉନ୍ ସାମନା, ଗୋଧ୍ରା । (ଜି-ପଞ୍ଚମହାଲ) ଫୋନ-(୦୨୬୭୨) ୨୬୨୩୦୦

**ମୋର୍ବୀ** : ତ୍ରିମନ୍ଦିର, ମୋରବୀ-ନବଲଖି ହାଇୱେ, ପୋ:ଜୟପୁର, ଜିଲ୍ଲା-ରାଜକୋଟ, ଫୋନ-(୦୨୮୨୨)୨୯୭୦୯୭

**ଅମ୍ରେଲୀ** : ତ୍ରିମନ୍ଦିର, ଲିଲିୟା ରୋଡ, ବାଇପାସ ଚୋକଡି, ଖାରାବାଡି, ୯୯୨୪୩୪୪୪୬୦

**ସୁରେନ୍ଦ୍ରନଗର** : ତ୍ରିମନ୍ଦିର, ସୁରେନ୍ଦ୍ରନଗର-ରାଜକୋଟ ହାଇୱେ, ଲୋକ ବିଦ୍ୟାଳୟ ପାଖ, ମୂଳି ରୋଡ, ୯୮୭୯୨୩୨୮୭୭

**ଅହମଦାବାଦ**:ଦାଦା ଦର୍ଶନ, ୫, ମମତାପାର୍କ ସୋସାଇଟୀ, ନବ ଗୁଜରାଟ କଲେଜ ପଛ, ଉସ୍ମାନପୁରା, ଅହମଦାବାଦ-୩୮୦୦୧୪, ଫୋନ-(୦୭୯)୨୭୫୪୦୪୦୮

**ବଡ଼ୋଦରା** : ଦାଦା ମନ୍ଦିର, ୧୭, ମାମା କି ପୋଲ-ମୁହଲ୍ଲା, ରାବପୁରା ପୋଲିସ ଷ୍ଟେସନ ପାଖ, ସଲାଟ ୱାଡ଼ା, ବଡ଼ୋଦରା, ୯୯୨୪୩୪୩୩୩୫

**ମୁମ୍ବାଇ:**୯୩୨୩୫୨୮୯୦୧, **ବାଙ୍ଗାଲୋର:**୯୫୯୦୯୭୯୦୯୯, **କୋଲକତା:**୦୩୩-୩୨୯୩୩୮୮୫, **ଜଲନ୍ଧର:**୯୮୧୪୦୬୩୦୪୩, **ଜୟପୁର:**୯୩୫୧୪୦୮୨୮୫, **ହାଇଦ୍ରାବାଦ:**୯୯୮୯୮୭୭୭୮୬, **ଇନ୍ଦୋର:**୯୮୯୩୫୪୫୩୫୧, **ଅମରାବତୀ:**୯୪୨୨୯୧୫୦୬୪, **ରାୟପୁର:**୯୩୨୯୫୨୩୭୩୭, **ଭିଲାଈ:**୯୮୨୭୪୮୧୩୩୬, **ଦିଲ୍ଲୀ**:୯୮୧୦୦୯୮୫୬୪, **ଭୋପାଲ୍:**୯୪୨୫୦୨୪୪୦୫, **ଚେନ୍ନାଇ:**୯୩୮୦୧୫୯୯୫୭ **ଓଡିଶା:**୮୭୬୩୦୭୩୧୧୧

**www.dadabhagwan.org**
**Email : info@dadabhagwan.org**



## ଜୀବନର ଧ୍ୟେୟ

ଯଦି ଏହି ସଂସାର ତୁମକୁ ପୋଷାଉଛି (ଅସୁବିଧା କରୁନାହିଁ) ତେବେ ଆଗକୁ କିଛି ମଧ ବୁଝିବାର ଆବଶ୍ୟକତା ନାହିଁ ଆଉ ଯଦି ଏହି ସଂସାର ତୁମକୁ କିଛି ଅସୁବିଧା କରୁଛି ତେବେ ଅଧ୍ୟାତ୍ମ ଜାଣିବାର ଆବଶ୍ୟକତା ଅଛି ।

ଅଧ୍ୟାତ୍ମରେ 'ସ୍ୱ-ରୂପ'କୁ ଜାଣିବାର ଆବଶ୍ୟକତା ଅଛି । 'ମୁଁ କିଏ ।' ଏହା ଜାଣିବା ଦ୍ୱାରା ସବୁ ପଜଲ୍ ସଲ୍ଭ ହୋଇଯାଏ ।

-ଦାଦାଶ୍ରୀ



dadabhagwan.org

ISBN 978-93-85912-10-8




Printed in India

Price ₹10